# ମହାଯାତ୍ରା
# ଓ
# ରାଧାନାଥ

ଆଲୋଚନା:
ଉପାଧ୍ୟକ୍ଷ ବେଣୁଧର ରାଉତ





Digitized by PPRACHIN, SOA

# ମହାଯାତ୍ରା

ଆଲୋଚନା :

ବେଣୁଧର ରାଉତ

ଉପାଧ୍ୟକ୍ଷ

ରେଭେନ୍ସା ସାଂଧ୍ୟ ମହାବିଦ୍ୟାଳୟ

କଟକ-୩

Digitized by PPRACHIN, SOA

**ମହାଯାତ୍ରା ଓ ରାଧାନାଥ**

ସମ୍ପାଦନା :

ଅଧ୍ୟାପକ **ବେଣୁଧର ରାଉତ**

ପ୍ରକାଶକ :

ସହଦେବ ପ୍ରଧାନ

**ଫ୍ରେଣ୍ଡସ୍ ପବ୍ଲିଶର୍ସ**

ବିନୋଦବିହାରୀ

କଟକ-୭୫୩୦୦୨

ପ୍ରଥମ ସଂସ୍କରଣ :

ଡିସେମ୍ବର-୧୯୮୦

ଦ୍ୱିତୀୟ ସଂସ୍କରଣ :

ସେପ୍ଟେମ୍ବର-୧୯୮୩

ତୃତୀୟ ସଂସ୍କରଣ :

ମାର୍ଚ୍ଚ-୧୯୯୦

ମୁଦ୍ରାକର :

ସତ୍ୟସୁନ୍ଦର ପ୍ରେସ

କଟକ-୨

**MAHAYATRA O RADHANATH**

*Edited by*

Benudhar Rout

*Publisher*

**Sahadev Pradhan**

**Friend's Publishers**

Binodbehari,

Cuttack-753002

Orissa (India)

*First Edition* :

December-1980

*Second Edition* :

September-1983

*Third Edition* :

March-1990

*Printer* :

**Satyasundar Press**

Cuttack—753002

Price : **Rs. 13.00**

Digitized by PPRACHIN, SOA

# ମୁଖବନ୍ଧ

ଅସମ୍ପୂର୍ଣ୍ଣ ବା ଅର୍ଦ୍ଧସମାପ୍ତ ଗ୍ରନ୍ଥର ସମାଲୋଚନା କରିବା ନାନା କାରଣରୁ ବାଞ୍ଛନୀୟ ନୁହେଁ । 'ମହାଯାତ୍ରା' ଅସମ୍ପୂର୍ଣ୍ଣ କାବ୍ୟଗ୍ରନ୍ଥ । ତାହାର ସବିଶେଷ ସମାଲୋଚନା କରିବା ମୋହର ଅଭିପ୍ରାୟ ନୁହେଁ; କିନ୍ତୁ ବିଶିଷ୍ଟ କାରଣବଶତଃ କୌଣସି ଗ୍ରନ୍ଥ ଅସମ୍ପୂର୍ଣ୍ଣ ଅବସ୍ଥାରେ ସାଧାରଣଙ୍କ ସମୀପରେ ଉପସ୍ଥାପିତ ହେଲେ, ତାହା ସବୁ ସ୍ଥଳରେ ଉପେକ୍ଷଣୀୟ ହୋଇ ନ ପାରେ । ବିଶେଷତଃ, ସେହି ଗ୍ରନ୍ଥ ଯଦି କୌଣସି ପ୍ରଥିତନାମା ପ୍ରତିଭାଶାଳୀ ଲେଖକଙ୍କ ଲେଖନୀରୁ ବାହାରିଥାଏ ଏବଂ ଗ୍ରନ୍ଥର ବିଷୟ ଯଦି ସୁମହାନ୍, ଗମ୍ଭୀର ଏବଂ ଉପାଦେୟ ହୁଏ, ତେବେ ତାହା ଆଉକୁ ପାଠକ-ସମାଜର ପ୍ରୀତି ଓ ଆଦର ଆକୃଷ୍ଟ ହେବା ଏକାନ୍ତ ସ୍ପୃହଣୀୟ । ଆଧୁନିକ ଉତ୍କଳସାହିତ୍ୟ-ମନ୍ଦିରର ସର୍ବଶେଷ ବିନ୍ଦାଣୀ 'ମହାଯାତ୍ରା'ର କବି ଅଟନ୍ତି । ପୃଥିବୀର ଇତିହାସରେ ଅତୁଳନୀୟ ମହାକୁରୁକ୍ଷେତ୍ର-ଯୁଦ୍ଧରେ ବିଜୟଶ୍ରୀମଣ୍ଡିତ ଅଖଣ୍ଡ ଭାରତ ସାମ୍ରାଜ୍ୟର ଅଧୀଶ୍ୱର ଅଥଚ ବିଜୟୋତ୍ତରକାଳେ ଐଶ୍ୱର୍ଯ୍ୟ-ତୃପ୍ତ, ମହାଶୂନ୍ୟାୟିତହୃଦୟ, ଶୋକନିର୍ବେଦନିମଗ୍ନ, ବୈରାଗ୍ୟବ୍ୟାକୁଳ ଶାନ୍ତିପ୍ରୟାସୀ ଧର୍ମନନ୍ଦନ ଯୁଧିଷ୍ଠିର-ପ୍ରମୁଖ ପାଣ୍ଡବବୀରେନ୍ଦ୍ରମାନଙ୍କର ସେହି ପରମସ୍ମରଣୀୟ ମହାପ୍ରସ୍ଥାନରୂପ ସ୍ୱର୍ଗ-ମୃତକଥା 'ମହାଯାତ୍ରା'ର ବର୍ଣ୍ଣନୀୟ ବିଷୟ । ଭାରତର ଚିରପ୍ରସିଦ୍ଧ ମହାଭାରତରୂପ ବିରାଟ ମହାକାବ୍ୟର ସେହି ମହାଶୋକବୈରାଗ୍ୟାନ୍ତ ମହାଯାତ୍ରା-ଉପାଖ୍ୟାନପରି ଉଦାର ବା ଗମ୍ଭୀର ଗାଥା ଆଉ କ'ଣ ଅଛି ? କବି ରାଧାନାଥ ଶୁଭକ୍ଷଣରେ ଏହି ମହାବିଷୟ ନିର୍ବାଚନ କରି ନିଜ କବି-ଜୀବନକୁ ଧନ୍ୟ ଓ ସାର୍ଥକ କରିଅଛନ୍ତି ଏବଂ ଆଧୁନିକ ଉତ୍କଳସାହିତ୍ୟର ଆଶା ଓ ଗୌରବକୁ ଶତଗୁଣିତ କରିଦେଇଅଛନ୍ତି । ମହାଯାତ୍ରା ପରି ମହାଗାନ ଯେଉଁ ସାହିତ୍ୟରୂପ ସାରସ୍ୱତାଶ୍ରମରେ ସଙ୍ଗୀତ,

Digitized by PPRACHIN, SOA

ହୁଏ, ତାହା କବି-ଗୁରୁ ବ୍ୟାସଙ୍କର ବଦରିକାଶ୍ରମ ପରି ଅମର ଏବଂ ବନ୍ଦନୀୟ, ଏଥିରେ ସନ୍ଦେହ ନାହିଁ ।

'ମହାଯାତ୍ରା' ଆଧୁନିକ ଉତ୍କଳସାହିତ୍ୟର ପ୍ରଥମ ମହାକାବ୍ୟ । ୟୁରୋପୀୟମାନେ ମହାକାବ୍ୟକୁ 'ଏପିକ୍' ନାମରେ ଅଭିହିତ କରିଅଛନ୍ତି । ଇଉରୋପୀୟ ଏପିକ୍ ଏବଂ ସଂସ୍କୃତ ମହାକାବ୍ୟ—ଉଭୟ ମଧ୍ୟରେ ପ୍ରଣାଳୀଗତ କହିଁରି ବୈଷମ୍ୟ ଥିଲେ ହେଁ ସେମାନଙ୍କର ଉଦ୍ଦେଶ୍ୟ ଏକ ଅଟେ । କୌଣସି ଦେବଭାବସମ୍ପନ୍ନ ଉଦାରଚରିତ୍ର ମହାପୁରୁଷଙ୍କ ଏକ ମହତ୍ ଓ ମନୋହର କାର୍ଯ୍ୟ ବା ଅନୁଷ୍ଠାନ ମହାକାବ୍ୟର ପ୍ରାଣ ଅଟେ । ଅନୁଷ୍ଠାନର ଏକତ୍ୱ, ଅନୁଷ୍ଠାନର ମହତ୍ତ୍ୱ, ଅନୁଷ୍ଠାନର ଉପାଦେୟତା ବା ବୈଚିତ୍ର୍ୟମୟୀ ମନୋହାରିତା ଦେଖାଇ ମହାକାବ୍ୟର କବି ଆମ୍ଭମାନଙ୍କର କଳ୍ପନାର ପରିସର ବର୍ଦ୍ଧିତ କରିବା ପାଇଁ ଆମ୍ଭମାନଙ୍କ ନିକଟରେ ଧର୍ମାନୁପ୍ରାଣିତ ଆଦର୍ଶ ଚରିତ୍ର ବୀରର ଉପାଦେୟ ଆଲେଖ୍ୟ ଉପସ୍ଥାପିତ କରି ଆମ୍ଭମାନଙ୍କ ହୃଦୟରେ ବିସ୍ମୟ, ଭକ୍ତି, ଉଦାର, ସହାନୁଭୂତି ପ୍ରଭୃତି ମହାଭାବମାନଙ୍କୁ ଜାଗରିତ କରନ୍ତି ଏବଂ ଆମ୍ଭମାନଙ୍କର କ୍ଷୁଦ୍ର ସଙ୍କୀର୍ଣ୍ଣ ନୀଚ କାମନାମାନଙ୍କୁ ଅପସାରିତ କରି ତତ୍ପରିବର୍ତ୍ତେ ଉଦାର ପୂଣ୍ୟସନ୍ଦର୍ଭ ପ୍ରତିଷ୍ଠିତ କରିବା ପାଇଁ ଏକାନ୍ତ ଚେଷ୍ଟା କରନ୍ତି ।

ପ୍ରଥମତଃ, ଅନୁଷ୍ଠାନର ଏକତ୍ୱ ବା ଅଖଣ୍ଡତ୍ୱର ଅର୍ଥ ଏହି ଯେ, ମହାକାବ୍ୟବର୍ଣ୍ଣିତ ଘଟଣାଗୁଡ଼ିକ ଅନ୍ୟାଶ୍ରିତ ହୋଇ ଗୋଟିଏ ମାତ୍ର ଉଦ୍ଦେଶ୍ୟ ସାଧନ କରିବ । 'ମହାଯାତ୍ରା'କାବ୍ୟର ପ୍ରକାଶିତ ଅଂଶରେ କାର୍ଯ୍ୟଗତ ଏକତ୍ୱର ବ୍ୟାଘାତକାରୀ କୌଣସି ବର୍ଣ୍ଣନା ସନ୍ନିବେଶିତ ହୋଇ ନାହିଁ ଏବଂ ଆଶାକରେ, ଅବଶିଷ୍ଟ ଅଂଶରେ ମଧ୍ୟ ଏ ପ୍ରକାର ଦୋଷ ଲକ୍ଷିତ ହେବ ନାହିଁ । ଦ୍ୱିତୀୟତଃ, ଅନୁଷ୍ଠାନର ମହତ୍ତ୍ୱ ବୋଇଲେ ବୁଝିବାକୁ ହେବ ଯେ, କାବ୍ୟବର୍ଣ୍ଣିତ କାର୍ଯ୍ୟଟି ସାମାନ୍ୟ ବା କ୍ଷୁଦ୍ର ନହୋଇ ମହତ୍ ଗୌରବଯୁକ୍ତ ଓ ଲୋକପ୍ରସିଦ୍ଧ ହେବ ଏବଂ ତଦ୍ଦ୍ୱାରା ନାୟକର ବୀରତ୍ୱ ବା ଚରିତ୍ରର ମହିମା

Digitized by PPRACHIN, SOA

ସ୍ପଷ୍ଟରୂପେ ପ୍ରତିପନ୍ନ ହେବ । ମୁଁ ଏଥିପୂର୍ବେ କହିଅଛି ଯେ ପାଣ୍ଡବମାନଙ୍କ 'ମହାପ୍ରସ୍ଥାନ' ପରି ଅନୁଷ୍ଠାନର ମହିମା ଓ ଗୌରବ ବିଷୟରେ କାହାରି ସନ୍ଦେହ ହୋଇ ନ ପାରେ । ପୁଣି ପାଣ୍ଡବକୁଳଶିରୋମଣି ଯୁଧିଷ୍ଠିରଙ୍କ ଅପେକ୍ଷା ମହାକାବ୍ୟର ଉପଯୁକ୍ତ ମହାପୁରୁଷ କେଉଁଠାରେ ମିଳିବେ ? ଅତଏବ ଏହା ନିଃସଂଶୟ ଯେ, 'ମହାଯାତ୍ରା'ର ବର୍ଣ୍ଣିତ ଅନୁଷ୍ଠାନ ଏବଂ ସେହି ଅନୁଷ୍ଠାନର ମୁଖ୍ୟକର୍ତ୍ତା ଯୁଧିଷ୍ଠିର ପରସ୍ପର ଯୋଗ୍ୟ ହୋଇ କାବ୍ୟର ଉତ୍କର୍ଷ ସୂଚନା କରିଛନ୍ତି । କବି ପ୍ରକାଶିତ ଅଂଶରେ କାର୍ଯ୍ୟ ଓ ନାୟକର ଗୌରବ ସଂରକ୍ଷଣ ବିଷୟରେ ଯତ୍ପରୋନାସ୍ତି ଯତ୍ନ କରିଅଛନ୍ତି ଏବଂ ଏହା ମଧ୍ୟ ଆଶା କରାଯାଏ ଯେ, ସେ ଭବିଷ୍ୟତରେ ସେହି ଗୌରବ ଅକ୍ଷୁଣ୍ଣ ଭାବରେ ରକ୍ଷା କରିପାରିବେ । ତଥାପି ଏଠାରେ ମୋର କହି ରଖିବା ଉଚିତ ଯେ ପ୍ରକାଶିତ ଅଂଶ ମଧ୍ୟରେ କବି ଚରିତ୍ର-ଚିତ୍ର ବିଷୟରେ ସାଧାରଣାତିରିକ୍ତ କ୍ଷମତା ଦେଖାଇ ନାହାନ୍ତି ବା ଦେଖାଇବାର ଅବସର ପାଇ ନାହାନ୍ତି । ଏ ପର୍ଯ୍ୟନ୍ତ କାବ୍ୟର ନାୟକ ଓ ଅନ୍ୟାନ୍ୟ ପାତ୍ରମାନଙ୍କରେ ଯେଉଁ ଚରିତ୍ର-ଚିତ୍ର ଦିଆଯାଇଛି, ସେଥିରେ ପ୍ରତ୍ୟେକ ଚରିତ୍ରର ସୂକ୍ଷ୍ମ ତାରତମ୍ୟ ବା ବିଶେଷତ୍ୱ ସୁପରିସ୍ଫୁଟ ହୋଇ ନାହିଁ । ତୃତୀୟତଃ, ଅନୁଷ୍ଠାନର ମନୋହାରିତା କହିଲେ ବୁଝିବାକୁ ହେବ ଯେ, କବି କାବ୍ୟର ଉପାଖ୍ୟାନକୁ ସରସ, ଉପାଦେୟ ଓ ମନୋହର କରିବା ନିମିତ୍ତ ନାନା ବିଚିତ୍ର, ଅଦ୍ଭୁତ ଏବଂ ସୁନ୍ଦର ବର୍ଣ୍ଣନାମାନ ନୈପୁଣ୍ୟ-ସହକାରେ ସଂଯୋଜିତ କରିବେ । ଏ ସମ୍ବନ୍ଧରେ ମୋର ବକ୍ତବ୍ୟ ଏହି ଯେ, 'ମହାଯାତ୍ରା'ର କବି ବର୍ଣ୍ଣନା ବିଷୟରେ ସର୍ବତ୍ର ଯେଉଁ ଶକ୍ତି, ସୌନ୍ଦର୍ଯ୍ୟ ଓ କୌଶଳ ଦେଖାଇଛନ୍ତି, ତାହା ଅସାମାନ୍ୟ ଏବଂ ସମଗ୍ର ଉତ୍କଳ ସାହିତ୍ୟ ମଧ୍ୟରେ ଅତୁଳ୍ୟ ବୋଇଲେ ଅତ୍ୟୁକ୍ତି ହେବ ନାହିଁ; କିନ୍ତୁ ସେ ବର୍ଣ୍ଣନାଗୁଡ଼ିକ ମଧ୍ୟରୁ କତିପୟ ଅଂଶ ସରସତା ସତ୍ତ୍ୱେ ମହାକାବ୍ୟରେ ଅନୁପଯୁକ୍ତ ଅଥବା ବର୍ତ୍ତମାନ ଯୁଗର ଜ୍ଞାନୋଜ୍ଜ୍ୱଳ ବିଶ୍ୱାସର ବିରୋଧୀ । ସମଗ୍ର ଚତୁର୍ଥ ସର୍ଗ ଗୋଟିଏ ଅତି ସୁନ୍ଦର ହୃଦୟହାରିରୂପକ ମାଳା । ଇଉରୋପୀୟ ଆଲଙ୍କାରିକମାନଙ୍କ ମତରେ ନାନା ରୂପକ ସନ୍ନିବେଶଦ୍ୱାରା ମହାକାବ୍ୟର ଉଦ୍ଦେଶ୍ୟ ବିଫଳୀକୃତ ହୁଏ । କୌଣସି କୌଣସି ବର୍ଣ୍ଣନା ପ୍ରାଚୀନ

Digitized by PPRACHIN, SOA

କବିମାନଙ୍କର ଉପଯୁକ୍ତ ହେଲେ ହେଁ କୁସଂସ୍କାର ପରିପୋଷକତା-ହେତୁ ଆଧୁନିକ ପ୍ରଶସ୍ତ ବିଶ୍ୱାସର ବିରୋଧୀ ହୋଇଛି । ସ୍ଥଳରେ ପ୍ରକୃତିର ରୁଦ୍ରସୁନ୍ଦର ଦୃଶ୍ୟ, ରଣାଙ୍ଗନର ମହାଭୈରବ ବ୍ୟାପାର ପ୍ରଭୃତି ବର୍ଣ୍ଣନାରେ କବିଙ୍କର ପ୍ରତିଭା 'ମହାଯାତ୍ରା' କାବ୍ୟରେ ମୁକ୍ତଭାବରେ କ୍ରୀଡ଼ା କରୁଅଛି । ମହାଯାତ୍ରାର ଛନ୍ଦ ଓ ଭାଷା ବିଷୟରେ ମଧ୍ୟ କିଛି କହିବାର ଅଛି । ମହାଯାତ୍ରା ଅମିତ୍ରାକ୍ଷର ଛନ୍ଦରେ ଲିଖିତ ହୋଇଅଛି । ଉତ୍କଳ କାବ୍ୟରେ ଅମିତ୍ରାକ୍ଷର ଛନ୍ଦ ପ୍ରବର୍ତ୍ତନରେ ଏହି ପ୍ରଥମ ଶୁଭପ୍ରୟାସ । ଏଥିପୂର୍ବେ ବଙ୍ଗୀୟ କବିବର ଶ୍ରୀ ମାଇକେଲ ମଧୁସୂଦନ ଦତ୍ତ ବଙ୍ଗଳା ପଦ୍ୟର ପ୍ରକୃତି ଓ ନିୟମ ଆଲୋଚନା କରି ଏହି ଛନ୍ଦକୁ ପ୍ରବର୍ତ୍ତିତ କରିଥିଲେ । ସୁତରାଂ ବଙ୍ଗୀୟ ପଦ୍ୟର ଏକାନ୍ତ ଅନୁରୂପ ଉତ୍କଳ ପଦ୍ୟ-ସାହିତ୍ୟ ମଧ୍ୟରେ ଏହି ନୂତନ ଛନ୍ଦର ଅବତାରଣା ଦ୍ୱାରା କବି ଶ୍ରୀ ରାଧାନାଥ କିଛି ମୌଳିକତା ଦେଖାଇ ନାହାନ୍ତି; କିନ୍ତୁ ଏହା ମୁଁ ମୁକ୍ତ କଣ୍ଠରେ କହିପାରେ ଯେ ତାଙ୍କ ଛଡ଼ା ଅନ୍ୟ କୌଣସି ଉତ୍କଳୀୟ ଲେଖକ ଏହି ଛନ୍ଦର ଯଥାଯଥ ପ୍ରୟୋଗ ବିଷୟରେ ଦକ୍ଷତା ଦେଖାଇପାରନ୍ତେ ନାହିଁ । ବଙ୍ଗଭାଷାରେ ଅମିତ୍ରାକ୍ଷର ଛନ୍ଦ ପ୍ରବର୍ତ୍ତିତ ହେଲାଦିନୁ ଅନେକ ଲୋକପ୍ରସିଦ୍ଧ ବଙ୍ଗୀୟ କବି ଉକ୍ତ ଛନ୍ଦରେ କାବ୍ୟ ଲେଖିଛନ୍ତି; କିନ୍ତୁ ମୋ କ୍ଷୁଦ୍ର ମତରେ ଜଣେ ଦୁଇ ଜଣଙ୍କୁ ଛାଡ଼ିଦେଲେ କାହାରି ରଚନା ମାଇକେଲଙ୍କ ରଚନା ପରି ମନୋଜ୍ଞ ହୋଇନାହିଁ । ଯେଉଁ ଅତ୍ୟଳ୍ପ ସଂଖ୍ୟକ ଲେଖକ ଏ ବିଷୟରେ କୃତକାର୍ଯ୍ୟ ହୋଇଅଛନ୍ତି, ସେଥିମଧ୍ୟରେ ଆମ୍ଭମାନଙ୍କର କବି ଶ୍ରୀ ରାଧାନାଥ ଜଣେ ଅଟନ୍ତି । ଅମିତ୍ରାକ୍ଷର ଛନ୍ଦରେ ତାଙ୍କ ରଚିତ ଅନେକଗୁଡ଼ିଏ ବଙ୍ଗଳା କବିତା ଗୁଣିଗଣାଗ୍ରଗଣ୍ୟ ଶ୍ରୀ ଭୂଦେବ ମୁଖୋପାଧ୍ୟାୟ ପ୍ରଭୃତିଙ୍କ ଦ୍ୱାରା ଭୂୟୋଭୂୟଃ ପ୍ରଶଂସିତ ହୋଇଅଛି । 'ମହାଯାତ୍ରାର' ଛନ୍ଦ ମାତ୍ରାନିୟମ ଓ ଯତିପାତକୌଶଳ ହେତୁ ଯେପରି ସୁଖପାଠ୍ୟ, ସେହିପରି ସୁଶ୍ରାବ୍ୟ ହୋଇଛି । ଓଡ଼ିଆ ଭାଷାରେ ଅମିତ୍ରାକ୍ଷର ଛନ୍ଦ ନୂତନ ବୋଲି ପ୍ରଥମେ ଅନେକଙ୍କର ଅବିଜ୍ଞାତ ବା ଉପହସିତ ହୋଇପାରେ; କିନ୍ତୁ ସେମାନଙ୍କର ଜାଣିବା ଉଚିତ ଯେ, ଆବହମାନକାଳରୁ ପୃଥିବୀର ପ୍ରସିଦ୍ଧ ସାହିତ୍ୟମାନଙ୍କରେ ଅମିତ୍ରାକ୍ଷର ଛନ୍ଦ ପ୍ରଚଳିତ ହୋଇଆସୁଛି ଏବଂ ପୃଥିବୀର

Digitized by PPRACHIN, SOA

ସର୍ବୋତ୍କୃଷ୍ଟ ମହାକାବ୍ୟମାନ ସେହି ଛନ୍ଦରେ ଲିଖିତ । ଦୃଷ୍ଟାନ୍ତ ନିମିତ୍ତ ଦୂରକୁ ଯିବାର ପ୍ରୟୋଜନ ନାହିଁ । ଭାରତର ପରମାରାଧ୍ୟ ସଂସ୍କୃତ ସାହିତ୍ୟର ସମୁଦାୟ ଉଲ୍ଲେଖଯୋଗ୍ୟ କାବ୍ୟ ନାନାବିଧ ଅମିତ୍ରାକ୍ଷର ଛନ୍ଦରେ ରଚିତ । ଯେତେବେଳେ ବଙ୍ଗଳାରେ ସର୍ବପ୍ରଥମ ମାଇକେଲ ଅମିତ୍ରାକ୍ଷର ଛନ୍ଦ ପ୍ରବର୍ତ୍ତନ କଲେ, ସେତେବେଳେ ଶତ ଶତ ଲୋକ ତାହାର ବିରୋଧୀ ହୋଇଥିଲେ; କିନ୍ତୁ ବର୍ତ୍ତମାନ ସମସ୍ତେ ସ୍ୱୀକାର କରୁଛନ୍ତି ଯେ, ଉକ୍ତ ଛନ୍ଦ ପ୍ରବର୍ତ୍ତନ ଦ୍ୱାରା ବଙ୍ଗଳା-କବିତାର ଗୌରବ ନିଃସନ୍ଦେହ ରୂପେ ବର୍ଦ୍ଧିତ ହୋଇଅଛି । ବାସ୍ତବରେ ଅମିତ୍ରାକ୍ଷର କବିତାରେ ବିକାଶ ନିମିତ୍ତ ଅପରିହାର୍ଯ୍ୟ ଉପାଦେୟ ରୂପେ ଅବଲମ୍ବନୀୟ ନୁହେଁ । ଏହା ମଧ୍ୟ କବିତାର ପ୍ରକୃଷ୍ଟ ଭୂଷଣ ନୁହେ; ବରଂ ଅନେକ ସମୟରେ ଭାବର ଦାରିଦ୍ର୍ୟ ଘୋଡ଼ାଇବା ନିମିତ୍ତ ମିତ୍ରାକ୍ଷର ଗୋଟିଏ କୃତ୍ରିମ ଭୂଷଣ ରୂପେ ବ୍ୟବହୃତ ହୁଏ । ଭାବ ହିଁ କବିତାର ପ୍ରାଣ ଏବଂ ସଙ୍ଗୀତମୟ ଭାଷା ତାହାର ଶରୀର ଅଟେ । ମିତ୍ରାକ୍ଷର ବା ଅମିତ୍ରାକ୍ଷର ହେଉ, ଯେଉଁ କବିତାର ଭାବ ମହାନ୍ ଓ ମର୍ମସ୍ପର୍ଶୀ, ଯାହାର ଭାଷା ମଧୁର ସଙ୍ଗୀତମୟ ଏବଂ ସୁ-ଭାବର ଉପଯୁକ୍ତ ଅର୍ଥାତ୍ ମାତ୍ରା ବିରାମାଦି କୌଶଳ ହେତୁରୁ ସୁଗେୟ, ତାହା ହିଁ ପ୍ରକୃତ କବିତାପଦବାଚ୍ୟ । ଭାବ ଓ ଭାଷା ଉଭୟ ବିଷୟରେ 'ମହାଯାତ୍ରା' ଯେ ଉତ୍କୃଷ୍ଟ ହୋଇଅଛି, ତାହା ଯେଉଁମାନେ ଥରେ ଅବଧାନପୂର୍ବକ ଅବିକୃତଚିତ୍ତରେ ପଢ଼ିବେ, ସେମାନେ ଅବଶ୍ୟ ମୁକ୍ତକଣ୍ଠରେ ସ୍ୱୀକାର କରିବେ ।

ପରିଶେଷରେ ମୋର ଏହି ଆଶା ଏବଂ ପ୍ରାର୍ଥନା ଯେ କବି ଶ୍ରୀ ରାଧାନାଥ ମହାଯାତ୍ରାରୂପ ଯେଉଁ ସୁଧାମୟ ମନୋହର-ଗୀତ ଆରମ୍ଭ କରିଛନ୍ତି, ତାହା ଆଦିକବି ବିଧାତାଙ୍କ କୃପାରେ ସମାପ୍ତ କରି ଉତ୍କଳ ସାହିତ୍ୟ ମନ୍ଦିରକୁ ଜ୍ୟୋତିର୍ମୟ କରନ୍ତୁ ।

**ଶ୍ରୀ ମଧୁସୂଦନ ରାଓ**

Digitized by PPRACHIN, SOA

# ମହାଯାତ୍ରା ଓ ରାଧାନାଥ

ସାରସ୍ୱତ ମାଳୀ ରାଧାନାଥଙ୍କ ଅସମ୍ପୂର୍ଣ୍ଣ 'ମହାଯାତ୍ରା' ଏକ ଅସମାପ୍ତ ଉଦ୍ୟାନ—ଆମର ଭାରତୀୟ ମାଟିରେ, ଦେଶୀ ମାଟିରେ । ଏ ଉଦ୍ୟାନରେ ସଂସ୍କୃତ, ଓଡ଼ିଆ, ବଙ୍ଗଳା ପ୍ରଭୃତ ସାହିତ୍ୟର ଦେଶୀ ଫୁଲଙ୍କ ଗହଣରେ ବହୁ ବିଦେଶୀ ଫୁଲ ବି ଫୁଟିଛି; ସେଇ ଫୁଲଙ୍କ ଗଛମାନ ରାଧାନାଥ ଆହରଣ କରିଛନ୍ତି ବିଦେଶୀ ସାରସ୍ୱତ ମାଳୀ ସ୍ପେନ୍‌ସର୍, ମିଲ୍‌ଟନ୍, କାଟ୍‌ସ, ସେକ୍‌ସ-ପିୟର ପ୍ରଭୃତଙ୍କଠାରୁ । ଏପରିକି ସେ ମିଲ୍‌ଟନ୍‌ଙ୍କ ସହିତ ହିନ୍ଦୁ ପୁରାବୃତ୍ତ (myth)—ଉଦ୍ୟାନ ଦେଖି ଥାଇ ପାରନ୍ତି । ନିଜ ଉଦ୍ୟାନଟି ସମାପ୍ତ ହୋଇ ଯାଇଥିଲେ ସ୍ପଷ୍ଟ ଜଣାଯାଇଥାନ୍ତା ସେଠାରୁ ସେ ଫୁଲ ଗଛ ଆଣି ଏଠି ରୋପିଚନ୍ତି କି ନାହିଁ । କିନ୍ତୁ ନିଜ ଉଦ୍ୟାନର ସାଜସଜ୍ଜା ଏବଂ ପରିପାଟୀ କେମିତି ହେବା କଥା, କେମିତି ହୋଇଛି—ଏଇ ମାଳୀସୁଲଭ ଔଦ୍ୟାନିକ-ଶିଳ୍ପକଳା ନିଶ୍ଚିତ ଭାବରେ ତାଙ୍କର ନିଜସ୍ୱ ।

'ପଶ୍ଚାନ୍ତରେ, ଏହି ଅପୂର୍ଣ୍ଣାଙ୍ଗ ସୃଷ୍ଟିରେ ଇତସ୍ତତଃ ଅନେକ ଅଦ୍ଭୁତ ବର୍ଣ୍ଣନା, ଭାବ ବା କଳ୍ପନା ଭିତ୍ତିରେ ସ୍ରଷ୍ଟା ରାଧାନାଥଙ୍କ 'ମଧୁକୋଷ-ବ୍ୟକ୍ତିତ୍ୱ' ଓରଫ୍ ବହୁପାଠିତାର ପରିଚୟ—କବି ଅଭିମନ୍ୟୁଙ୍କ କଥାରେ କୁହାଯାଇ-ପାରେ—

ସୁଜନେ, ଆଦର ମିତ୍ରପରି ଏ କବିତ୍ୱ ।
ସର୍ବସୁମନା-ସୁରସ କରିଛୁ ଏକତ୍ର ।।
ସରଘା ପରାୟେ ଅଳ୍ପ-ବୁଦ୍ଧି ଶକ୍ତି-ହୀନ ।
ସଂସାରେ କେବଳ 'ମଧୁକୋଷ' କାଟି ଘେନ ।।

Digitized by PPRACHIN, SOA

"ମହାଯାତ୍ରା ଗୋଟିଏ ଅତୁଳ୍ୟ ମଧୁକୋଷ । ଏଠି; ଅଳ୍ପ ବୁଦ୍ଧି ବା ଶକ୍ତିହୀନ କୁହାଗଲେ ବି ତାହା ବିନଷ୍ଟୋକ୍ତି; ଆମ ପ୍ରାଚୀନ ସାହିତ୍ୟରେ ଅଭିମନ୍ୟୁଙ୍କ ପରି ଏ ଯୁଗରେ ରାଧାନାଥ ବହୁପାଠିତାରେ ଅପ୍ରତିଦ୍ୱନ୍ଦୀ ।"

ମହାଯାତ୍ରାର ଅସମ୍ପୂର୍ଣ୍ଣତା ସତ୍ତ୍ୱେ ଏହାର ମହତ୍ତ୍ୱ ଏବଂ ନୂତନତ୍ୱ ଅନୁଭବ କରି—ମଧୁସୂଦନ ରାଓ ଏହାକୁ ପାଶ୍ଚାତ୍ୟ ମହାକାବ୍ୟର ଲକ୍ଷଣରେ ବିବେଚନା କରି ଏହାର ଭୂମିକା ଲେଖିଲେ । ପରବର୍ତ୍ତୀ କାଳରେ, ଅନ୍ୟାନ୍ୟ ସମାଲୋଚକ ସମ୍ଭବତଃ ମଧୁସୂଦନଙ୍କ ପାଶ୍ଚାତ୍ୟ ସାହିତ୍ୟମନୀଷା ପ୍ରତି ଅବହିତ ହୋଇ ନ ପାରି ପ୍ରାଚ୍ୟ ବା ସଂସ୍କୃତ ସାହିତ୍ୟଶାସ୍ତ୍ରର ମହାକାବ୍ୟ ଲକ୍ଷଣସୂତ୍ରରେ ମହାଯାତ୍ରାର ମହାକାବ୍ୟ-ମୂଲ୍ୟ ନିରୂପଣ କରିବାକୁ ଚେଷ୍ଟା କରିଛନ୍ତି । ମୋର ବିବେଚନାରେ ଏ ଉଭୟ ପକ୍ଷର ବିଚାର ପ୍ରାଚୀନ ତଥା ଏକପ୍ରକାର ଅଚଳ ହୋଇଯାଇଥିବାରୁ କାବ୍ୟଶିଳ୍ପ-ସଚେତନ କବି ରାଧାନାଥ, ନିଜର ସମକାଳୀନ ଯୁଗଚେତନା-ରାଧାନାଥ ପାଶ୍ଚାତ୍ୟ କିମ୍ବା ପ୍ରାଚ୍ୟ ମହାକାବ୍ୟରଚନା ମାର୍ଗରୁ କୌଣସିଟିକୁ ବସ୍ତୁତଃ ସ୍ୱୀକାର କରିନାହାନ୍ତି । କୌଣସି ସୁକବି ନିୟମ ମାନି କବିତା ଲେଖେ ନାହିଁ । ରାଧାନାଥ ବି ନିୟମ ମାନି ନାହାନ୍ତି । ବରଂ ନିଜର ସୃଷ୍ଟି ବିରଚନାରେ ମହାକାବ୍ୟତ୍ୱର ପରିମାର୍ଜନା କରିଛନ୍ତି । ତାଙ୍କର ସ୍ୱାତନ୍ତ୍ର୍ୟ ଏବଂ ବୈଶିଷ୍ଟ୍ୟ ଯୋଗୁ 'ମହାଯାତ୍ରା'କୁ ମୁକ୍ତକ ମହାକାବ୍ୟ ରୂପେ ନାମିତ କରିବାହିଁ ସଙ୍ଗତ । ଏହା ସତ୍ତ୍ୱେ, ମହାଯାତ୍ରା ମହାକାବ୍ୟ ହେବ କି ନାହିଁ, ହେଲେ—କି ଶ୍ରେଣୀର ହେବ, ଇତ୍ୟାଦି ବିଚାରମାନ (ଟେକ୍ନିକର ବନ୍ଧଗଣା ନ୍ୟାୟରେ) ଅବାନ୍ତର । ଅସଲ ଦେଖିବା କଥା—ମହାଯାତ୍ରା ଭଲ କାବ୍ୟ ହୋଇଛି କି ହୋଇନାହିଁ ଏବଂ ଏହାର ହୃଦ୍‌ବୋଧ-ମୂଲ୍ୟ କେତେ ? ୧

---

୧ ପାଶ୍ଚାତ୍ୟ ସାହିତ୍ୟରୁ ରାଧାନାଥଙ୍କ ଆହରଣ ଏବଂ ବୈଶିଷ୍ଟ୍ୟ; ଡଗର (ରାଧାନାଥ ବିଶେଷାଙ୍କ) ଡିସେମ୍ବର-ଜାନୁଆରୀ—୧୯୭୦-୭୧—ପୃଷ୍ଠା-୨୨ ।

Digitized by PPRACHIN, SOA

ମହାଯାତ୍ରା ଅସମାପ୍ତ ହେଲେ ସୁଦ୍ଧା କବିଙ୍କର ଏହା ଏକତମ ପରିଣତ ରଚନା । ଏହାର ଭିତ୍ତି ଓ ଭୂତର ଆଲୋଚନା କରିବା ପୂର୍ବରୁ ତାଙ୍କର ଏକ ବ୍ୟକ୍ତିଗତ ସ୍ୱୀକୃତ ପ୍ରସଙ୍ଗର ଉଲ୍ଲେଖ କରୁଯାଉ । ଏକଦା କଥାଛଳରେ, ଓଡ଼ିଶାରୁ ଉପାଦାନ ସଂଗ୍ରହ କରି କାବ୍ୟ, କଥାକାବ୍ୟମାନ ଲେଖିବା ପାଇଁ, ଭୂଦେବ ବାବୁ ରାଧାନାଥଙ୍କୁ ପରାମର୍ଶ ଦେଇଥିଲେ, "... ଓଡ଼ିଶା ବାସ୍ତବିକ କବିତ୍ୱପୂର୍ଣ୍ଣ ଶିଶୁର ଉପଯୁକ୍ତ ଧାତ୍ରୀ (meet nurse for a poetic child ) । ଓଡ଼ିଶାର ଯେଉଁ ଆଡ଼କୁ ଚାହିଁବ, ନୂଆ ଗଢ଼ିବାର ଉପାଦାନ ଯଥେଷ୍ଟ ରହିଅଛି ।" ରାଧାନାଥ ସ୍ପଷ୍ଟ ଉତ୍ତର ଦେଇଥିଲେ, "ନୂଆ ଘଟଣା କଳ୍ପନାରୁ ଉଦ୍ଭାବନ କରି ଲେଖିବା ମୋ ଭଳି ଲୋକର ସାଧ୍ୟାତୀତ ।" ୧ ଏହା ଉଦ୍ଭାବକର ଅକ୍ଷମତାର ସରଳ ସ୍ୱୀକାରୋକ୍ତି । ଏହା ସୁକବିସୁଲଭ, ମହତ୍ ଏବଂ ମହାର୍ଘ । ଅଥଚ, ଏ ଅକ୍ଷମତା ସତ୍ତ୍ୱେ କୌଣସି ଏକ ଘଟଣାର କଙ୍କାଳସୂତ୍ରଟିଏ ଧରାଇଦେଲେ କବି ରାଧାନାଥ ଶିଳ୍ପୀ ମିଖାଏଲ୍ ଗେର-ସିମୋଭ୍ଙ୍କପରି ତାହାର ଅବିକଳ ଜୀବନ୍ତପ୍ରତିମା ଗଢ଼ିପାରନ୍ତି । ୨ । ମହାଯାତ୍ରା ସେହିଭଳି ଏକ କାବ୍ୟପ୍ରତିମା, ଅସମ୍ପୂର୍ଣ୍ଣ ହେଲେ ବି ସୁଭଦ୍ରାଙ୍କ କନକ ପ୍ରତିମା ପରି ଚିତ୍ତହାରିଣୀ । ବିଶ୍ୱକର୍ମାଙ୍କ ଭଳି କାରିଗର ଦ୍ୱାରା ଗଢ଼ା ହେଉଥିଲା ବୋଲି ବୋଧହୁଏ ଏ ଅସମ୍ପୂର୍ଣ୍ଣତା ଏତେ ଆକର୍ଷକ । ଏହା ବ୍ୟତୀତ, ଏ ପ୍ରତିମାର ଏକ ପାର୍ଶ୍ୱରେ ଜଗନ୍ନାଥ—ଯେମିତି କି କୃଷ୍ଣକାୟ ଭାରତୀୟ, ଦେଶୀ ଏବଂ ଅନ୍ୟ ପାର୍ଶ୍ୱରେ ବଳଭଦ୍ର—ସତେ ଯେମିତି ଶ୍ୱେତକାୟ, ବିଦେଶୀ ଓରଫ୍ ବିଲାତୀ, ପୁଣି କାଦମ୍ବରୀ ଭ୍ରାନ୍ତ-ସୁରା ପ୍ରୀତିର ଅପବାଦଧାରୀ । ଏଠି କେବଳ 'ଦେଶୀ' ଓ 'ବିଦେଶୀ'ର ପ୍ରତୀକତାକୁ ଧରିନେଲେ ବୁଝିହେବ ଯେ ସୁଭଦ୍ରା ଏ ଉଭୟଙ୍କର ଯୋଗାଯୋଗ, ଯୋଗସୂତ୍ର ତଥା ସମନ୍ୱୟର ଆଧାର । ଠିକ୍ ସେଇପରି ମହାଯାତ୍ରା ।

---

୧ ସେହି ପ୍ରବନ୍ଧରେ । ଡଗର ( ରାଧାନାଥ ବିଶେଷାଙ୍କ )—ପୃ. ୮

୨ ସମାଜ ସମ୍ପର୍କ ଓ ଆଲେଖନକଳା । ରଙ୍ଗଲେଖା (୧)—ପୃ. ୫

Digitized by PPRACHIN, SOA

ରାଧାନାଥ ମହାଯାତ୍ରା ରଚନା କରିବା ପୂର୍ବରୁ ବ୍ୟାସ, ଶ୍ରୀହର୍ଷ, ଭବଭୂତି, ମିଲ୍‌ଟନ୍, ସ୍ପେନ୍‌ସର, କାଟ୍‌ସ୍, ମାଇକେଲ୍ ମଧୁସୂଦନ ପ୍ରଭୃତି ଦେଶୀ ବିଦେଶୀ କବିମାନଙ୍କର ମହାନ୍ କୃତିମାଳା ସହିତ ପରିଚିତ ଥିଲେ—ବେଶ୍ ଘନିଷ୍ଠ ଭାବରେ। (ମହାଯାତ୍ରାର ସମ୍ପର୍କ ଦୃଷ୍ଟିରୁ ପ୍ରାସଙ୍ଗିକ କବିମାନଙ୍କର ଉଲ୍ଲେଖ କରାଯାଉଛି। କାରଣ ଏମାନେ ବର୍ତ୍ତମାନ ଆଲୋଚନାର ପରିସରରେ ମୁଖ୍ୟ।) ଏହି କବିମାନଙ୍କ କୃତିରୁ, ବିଶେଷତଃ ବ୍ୟାସଙ୍କ ମହାଭାରତଗର୍ଭିତ ମୌଷଳ ଓ ମହାପ୍ରସ୍ଥାନ ପର୍ବ, ମିଲ୍‌ଟନଙ୍କ ପାରାଡାଇଜ୍ ଲଷ୍ଟ୍ ଏବଂ ସ୍ପେନ୍‌ସରଙ୍କ ଫ୍ୟାରି କୁଇନ୍ ଚିତ୍ରରୁ ରାଧାନାଥ ମହାଯାତ୍ରାର କଥାବସ୍ତୁ ପରିକଳ୍ପନା କଲେ। ଏ ବିଭିନ୍ନ କବିଙ୍କଠାରୁ ବିଭିନ୍ନ ବିଷୟ, ଘଟଣା, ବ୍ୟାପାର, ଭାବ ଓ ଚିତ୍ର ଆଦି ଆହରଣ କରି ସେ ଶିଳ୍ପୀ ବା କାରିଗର ପରି ସଂଶ୍ଳେଷଣ କଳା-କୌଶଳରେ କାବ୍ୟର କଥାବସ୍ତୁ ଗଠନ କଲେ ଏବଂ ତହିଁରେ ରୂପଯୋଜନା ଓ ଲାବଣ୍ୟ ବିନ୍ୟାସ କଲେ।

ରାଧାନାଥ ମହାଯାତ୍ରା ବ୍ୟତୀତ ତାଙ୍କର ଅନ୍ୟାନ୍ୟ କାବ୍ୟ ଆରମ୍ଭ କରିଛନ୍ତି କଥାବସ୍ତୁରୁ ଏବଂ ଅନେକତଃ ନାଟକୀୟ ଢଙ୍ଗରେ। କେବଳ 'ମହାଯାତ୍ରା'ର ଆରମ୍ଭ ହୋଇଛି ନମସ୍କ୍ରିୟାରେ। ଏ ନମସ୍କ୍ରିୟା ପୁଣି ଦେଶୀ ନୁହେଁ—ବିଦେଶୀ। ମିଲ୍‌ଟନ୍‌ଙ୍କ Paradise Lost ର ଆରମ୍ଭ ହେଉଛି ଏହାର ଆଦର୍ଶ। ମିଲ୍‌ଟନ୍ ହେଉଛନ୍ତି ପ୍ୟୁରିଟାନ୍; ବାଗ୍‌ଦେବୀ Museଙ୍କ ସହିତ ତାଙ୍କର ସମ୍ପର୍କ ନଥିବା ସ୍ଥଳେ ବି ନିଜର ବିରାଟ ପରିକଳ୍ପନା ଉପ-ଲକ୍ଷରୁ ତାହାଙ୍କୁ, ସମ୍ଭବତଃ ଗ୍ରୀସୀୟ ପ୍ରେରଣାରୁ ନିବେଦନ କରିଛନ୍ତି।

Of man's first disobedience and the fruit of that forbidden tree whose mortal taste brought death into the world, and all our woe, With loss of Eden··· Sing heavenly Muse, that on that secret top of Oreb or Sinnai didst inspires the Shepherd.

—Paradise Lost, Book I

Digitized by PPRACHIN, SOA

ରାଧାନାଥ ସେଇପରି ନମସ୍କ୍ରିୟାରେ କଥାବସ୍ତୁକୁ ସୂଚିତ କରି ନିବେଦନ କଲେ—

ପଙ୍କଜବାସିନୀ ଦେବୀ, ଉତ୍କଳଭାରତୀ—
ଯାରିଲେ ! କି କଲେ କହ କୁରୁଚୂଡ଼ାମଣି
ଶୁଣିଲେ ଯେ କାଳେ ବୀର ବାର୍ତ୍ତାବହ ମୁଖେ
ପ୍ରଭାସେ ଯାଦବଙ୍କର ଜ୍ଞାତିକ୍ଷୟକାରୀ
ମହାହବ, ଧୀରମଣି ଧୈର୍ଯ୍ୟ ଧରି ଆହା,
କେମନ୍ତେ ଶୁଣିଲେ ସେହି ଦାରୁଣ ବାରତା ?
କି କଲେ ଶୁଣିଣ ଚିର ବିପଦ ବାନ୍ଧବ
ଯଦୁବଂଶ-ଅବତଂସ ଯାଦବ ପତିର
ନିର୍ବିଦ ପ୍ରୟାଣ ବାର୍ତ୍ତା କହ କୃପା କରି ।

ଏଇଠାରୁ ମହାଯାତ୍ରାର କଥାବସ୍ତୁର ଆରମ୍ଭ ହୁଏ ବ୍ୟାସଙ୍କ ମହାଭାରତର ମୌଷଳ ପର୍ବରୁ । ପ୍ରଭାସରେ ଯାଦବ ବଂଶର ବିନାଶ ସହିତ କୃଷ୍ଣଙ୍କ ମହାପ୍ରୟାଣ ସମାଚାର ଶୁଣି ଦ୍ରୌପଦୀ ଏବଂ ଭାଇମାନଙ୍କ ସମେତ ଶୋକମଗ୍ନ ହୁଅନ୍ତି ଯୁଧିଷ୍ଠିର । ଏହାପରେ ମହାପ୍ରସ୍ଥାନ ପର୍ବର ବିଷୟ । ସେମାନଙ୍କୁ କାଳପାଶ ଆକର୍ଷିବା ପୂର୍ବରୁ ଭାଇମାନଙ୍କୁ ନେଇ ସେ କାଳକୁ ଖୋଜିବାକୁ ସ୍ଥିର କଲେ । ହସ୍ତିନାର ସିଂହାସନରେ ପରୀକ୍ଷିତଙ୍କୁ ଓ ଇନ୍ଦ୍ରପ୍ରସ୍ଥରେ ବଜ୍ରଙ୍କୁ ଅଭିଷିକ୍ତ କରି ଯୁଧିଷ୍ଠିର ଯୁଯୁତ୍ସୁଙ୍କଠାରେ ରାଜ୍ୟ-ପରିଚାଳନା ଭାର ନ୍ୟସ୍ତ କଲେ, ଏବଂ ସେମାନଙ୍କ ଲାଳନପାଳନ ଓ ରକ୍ଷାର ଦାୟିତ୍ୱ ସୁଭଦ୍ରାଙ୍କଠାରେ ଅର୍ପଣ କଲେ । ବସୁଦେବ, ବଳରାମ ଓ କୃଷ୍ଣ ପ୍ରଭୃତିଙ୍କ ଉଦ୍ଦେଶ୍ୟରେ ଜଳାଞ୍ଜଳି ଦାନ ଓ ଶ୍ରାଦ୍ଧ କର୍ମମାନ ସମ୍ପାଦନ କରିସାରି, ସେ ପୁନଶ୍ଚ ତାଙ୍କର ବାଲ୍ୟଗୁରୁ କୃପାଚାର୍ଯ୍ୟଙ୍କୁ ନିବେଦନ ପୂର୍ବକ ତାଙ୍କଠାରେ ପରୀକ୍ଷିତଙ୍କର ଶିକ୍ଷାଭାର ଅର୍ପଣ କଲେ । ଏହାପରେ ସେ ପ୍ରଜାବର୍ଗଙ୍କ ନିକଟରେ ନିଜର ମହାପ୍ରସ୍ଥାନିକ ବ୍ରତ-ବିଚାର ଜ୍ଞାପନ କଲେ । ପ୍ରଜାଙ୍କ ଅନିଚ୍ଛା-ଗତ ମନା ନମାନି ସେମାନଙ୍କଠାରୁ

Digitized by PPRACHIN, SOA

ଅନୁମତ ଭିକ୍ଷା ଅର୍ଜନ କଲେ, ଏବଂ ଦ୍ରୌପଦୀ ଓ ଭାଇମାନଙ୍କୁ ସଙ୍ଗରେ ନେଇ ମହାପ୍ରସ୍ଥାନ ନିମନ୍ତେ ସ୍ଥିର ନିଷ୍ପତ୍ତି କଲେ। ସେ ସମସ୍ତେ ନିଜ ନିଜ ଅଙ୍ଗରୁ ଭୂଷଣମାନ ଉତାରିଦେଲେ, ଉତ୍ସର୍ଗ ବା ସଂସାର ବିସର୍ଜନର ସମୟୋଚିତ ଦାନ ଧର୍ମ ଆଦି ବିଧିମାନ ସମାପନ କଲେ, ଏବଂ ଗୃହର ବିଭିନ୍ନ ରୂପରେ ଅଧିଷ୍ଠିତ ଦେବତା ଅଗ୍ନିଙ୍କୁ ଜଳରେ ବିସର୍ଜନ କରି ମହାଯାତ୍ରାର ଆରମ୍ଭ ନିମନ୍ତେ ପ୍ରସ୍ତୁତ ହେଲେ। ଯୁଧିଷ୍ଠିରଙ୍କ ଇଚ୍ଛାନୁକ୍ରମେ ଦ୍ରୌପଦୀ ଏବଂ ଭାଇମାନେ ହସ୍ତିନାରୁ ପୂର୍ବଦିଗ ଅଭିମୁଖରେ ଯାତ୍ରାରମ୍ଭ କଲେ। ସଙ୍ଗରେ ଗୋଟିଏ ଶ୍ୱାନ ମଧ୍ୟ ଅନୁସରଣ କରିଚାଲିଲା।

ସେମାନେ ମାର୍ଗରେ ନାନା ତୀର୍ଥସ୍ଥାନ, ପୁଣ୍ୟପୀଠ ଆଦି ଦେଖି ଦେଖି ଆଗେଇ ଚାଲିଥାନ୍ତି। ପୂର୍ବ ସାଗରର ଉପକୂଳରେ ସମୁଦ୍ରରୁ ଅଗ୍ନିଦେବ ଆବିର୍ଭୂତ ହୋଇ, ଗାଣ୍ଡିବ ଧନୁ ଏବଂ ଅକ୍ଷୟ ତୂଣୀରକୁ ସମୁଦ୍ରରେ ନିକ୍ଷେପ କରିଦେବା ଲାଗି ଅର୍ଜୁନଙ୍କୁ ନିର୍ଦ୍ଦେଶ ଦେଲେ। ଭାଇମାନଙ୍କ ସମର୍ଥନ ଓ ପ୍ରେରଣାରେ ସେ ତାହା ସମୁଦ୍ର ଗର୍ଭକୁ ଫିଙ୍ଗିଦେଲେ। ପାଣ୍ଡବମାନେ ଏଥର ପୂର୍ବରୁ ଦକ୍ଷିଣକୁ ଏବଂ ଦକ୍ଷିଣରୁ ପଶ୍ଚିମ ଦିଗ ଅଭିମୁଖରେ କ୍ରମେ ଅଗ୍ରସର ହେଲେ। (ଏହାର ପରବର୍ତ୍ତୀ ବର୍ଣ୍ଣନା ହେଉଛି— ସେମାନଙ୍କର ହିମାଳୟ ପଥରେ ସ୍ୱର୍ଗାରୋହଣର ଉପକ୍ରମ ତଥା ଦ୍ରୌପଦୀଙ୍କଠାରୁ କ୍ରମଶଃ ଆରମ୍ଭ କରି ଭୀମଙ୍କ ପର୍ଯ୍ୟନ୍ତ 'ପାଣ୍ଡବ ପରିବାରର ପତନ ଚିତ୍ର' ଏ ପର୍ଯ୍ୟାୟର କପଟ ଉପଯୋଗ କରାଯାଇଥାନ୍ତା, ତାହା ମହାଯାତ୍ରାର କବିଙ୍କ କଳ୍ପନା ଭିତରେ ଲୀନ ହୋଇଯାଇଛି।

ପାଣ୍ଡବମାନଙ୍କର ଉପର୍ଯ୍ୟୁକ୍ତ ପର୍ଯ୍ୟଟନର ଚିତ୍ର ରାଧାନାଥଙ୍କ ଲେଖନୀରେ ଯଥୋଚିତ ଭାବରେ ରୂପଲାଭ କରିଛି। ତାହା ହୋଇଛି ସବିସ୍ତର ଏବଂ ନିଜର ରୁଚି-ଗଠିତ। ମଥୁରା, ପ୍ରୟାଗ, ବାରାଣସୀ, ସାକେତ, ନୈମିଷାରଣ୍ୟ, ଗୟା, ରାଜଘାଟ, କାଳଘାଟ ଆଦି ବିଭିନ୍ନ ପୁଣ୍ୟପୀଠ ସାନସାନ ମନୋରମ ଶବ୍ଦଚିତ୍ର (vignette) ରୂପେ ଅଙ୍କିତ। ପଞ୍ଚାଳ, କୋଶଳ, ବିଦେହ, ମଗଧ, ଅଙ୍ଗ

Digitized by PPRACHIN, SOA

ଓ ବଙ୍ଗ ଦେଶର ଉଲ୍ଲେଖ ସ୍ଥଳରେ ପାଣ୍ଡବମାନଙ୍କର ତୀର୍ଥ ଭ୍ରମଣର ଗୋଟିଏ ସାଧାରଣ ପର୍ଯ୍ୟାୟ ଶେଷ ହେଲ ବୋଲି କବି ସୂଚେଇ ଥିବା ମନେହୁଏ ।

କାରଣ ଏହାପରେ ଉତ୍କଳ ପର୍ଯ୍ୟଟନର ମୁଖ୍ୟତା । ବିଶେଷତଃ ନୀଳାଚଳ ତଟରେ ପାଣ୍ଡବମାନଙ୍କର ଦିବ୍ୟାନୁଭୂତ, ଅଦ୍ଭୁତ ଅନୁଭୂତ ଓ ସାନ୍ତ୍ୱନାପ୍ରଦ ଅନୁଭୂତ । ସେଇଠି ନୀଳସିନ୍ଧୁର ତରଙ୍ଗପୀଠରେ ଅଗ୍ନି-ଦେବଙ୍କର ଅଦ୍ଭୁତ ଆବିର୍ଭାବ, ଏବଂ ସେ ଅର୍ଜ୍ଜୁନଙ୍କୁ ଗାଣ୍ଡୀବ ଓ ଅକ୍ଷୟ ତୂଣୀର ସମୁଦ୍ର ଗର୍ଭକୁ ଫିଙ୍ଗି ଦେବା ନିମନ୍ତେ ନିର୍ଦ୍ଦେଶ ଦେବା ସଙ୍ଗେ ସଙ୍ଗେ ସେ ସମସ୍ତଙ୍କୁ ଏକ ଦିବ୍ୟ ସମାଚାର ମଧ୍ୟ ଦେଇଛନ୍ତି—କଳିଯୁଗରେ ଏହି ନୀଳାଚଳ ହେବ ପ୍ରଭୁଙ୍କର ମର୍ତ୍ତ୍ୟ ଲୀଳାସ୍ଥଳ ଚକ୍ରତୀର୍ଥ । ପୁଣି ଉତ୍କଳ ହେବ ପ୍ରଭୁଙ୍କର ପ୍ରିୟ ଭୂମି—ତାଙ୍କର ଶଙ୍ଖ, ଚକ୍ର, ଗଦା ଓ ପଦ୍ମ—ଏ ପ୍ରତ୍ୟେକକୁ ନେଇ ଗୃହୋଟି ପବିତ୍ର କ୍ଷେତ୍ର ପ୍ରତିଷ୍ଠିତ ହେବ ଏଇ ଭୂମିରେ । ପ୍ରଭୁ କେଶ-ବଙ୍କ ମହାପ୍ରୟାଣରେ ଶୋକମଳିନ ପାଣ୍ଡବମାନେ ତାଙ୍କର ଭବିଷ୍ୟତ୍‌ଗର୍ଭିତ ମର୍ତ୍ତ୍ୟଲୀଳା-କ୍ଷେତ୍ରର ଆଲେଖ୍ୟ ଦେଖିଛନ୍ତି ଅଗ୍ନିଦେବଙ୍କ କୃପାରୁ । କେବଳ ସେତିକି ନୁହେଁ, ଅଗ୍ନିଦେବ ଯୁଧିଷ୍ଠିରଙ୍କୁ ସମ୍ବୋଧନ କରି କହୁଛନ୍ତି— "ଇଚ୍ଛା ଯେବେ ମୋର ସଙ୍ଗେ ଚାଲ ମହାବାହୁ, ଦେଖିବ ଅଶେଷ ତୀର୍ଥ ଗିରି ନଦ ନଦୀ ।" (ଏହି ତୀର୍ଥ ଭ୍ରମଣ ପର୍ଯ୍ୟାୟରେ ସାରଳା ଦାସଙ୍କ ସହିତ ରାଧାନାଥଙ୍କର କିଛି ଯୋଗାଯୋଗ ଲକ୍ଷ୍ୟ କରିହେବ । ମାତ୍ର ମହାଯାତ୍ରାରେ ମିଲ୍‌ଟନୀୟ ଉଦାତ୍ତ ଗୁଣ-ରକ୍ଷାର ପ୍ରୟାସ ଦୃଷ୍ଟିରୁ ସାରଳା ଦାସଙ୍କ ଗ୍ରାମୀଣ ବର୍ଣ୍ଣନା ପ୍ରାୟ ରାଧାନାଥଙ୍କ ସଂଶ୍ଳେଷଣ ଶୈଳୀ ଭିତରେ ଲୁଚିଯାଇଛି ।)

ତେବେ, ଏଠି ଲକ୍ଷ୍ୟ କରିବା କଥା ଯେ ନୀଳାଚଳଠାରୁ ସହ୍ୟାଦ୍ରି ପର୍ଯ୍ୟନ୍ତ ପାଣ୍ଡବଙ୍କ ପର୍ଯ୍ୟଟନ ମାର୍ଗରେ ଅଗ୍ନିଦେବ ପାଣ୍ଡବଗଣ ଯୁଧିଷ୍ଠିରଙ୍କୁ ତାଙ୍କ ସ୍ୱତଃ ସାହାଯ୍ୟ ଓ ନେତୃତ୍ୱ ଦେଉଛନ୍ତି । ବ୍ୟାସଙ୍କ ମହାପ୍ରସ୍ଥାନିକ ପର୍ଯ୍ୟଟନ ଚିତ୍ରରେ ରାଧାନାଥ ମିଲ୍‌ଟନଙ୍କୁ ଜଡ଼ିତ କରିଦେଇଛନ୍ତି । ଏଠି ପାଣ୍ଡବଗଣ ଯୁଧିଷ୍ଠିର Paradies Lostର ଆଦାମ—ଉଭୟେ ନାୟକ,

Digitized by PPRACHIN, SOA

ପ୍ରୋଟାଗୋନଷ୍ଟ୍ । ପୁନଶ୍ଚ ଅଗ୍ନି ହେଉଛନ୍ତି ଦେବତା ମାଇକେଲ୍‌ଙ୍କ ରୂପାନ୍ତର। କାରଣ ମାଇକେଲ୍ ମଧ୍ୟ ଆଦାମ୍‌ଙ୍କୁ ସିନାଇ ପର୍ବତ ଉପରକୁ ସଙ୍ଗରେ ନେଇଛନ୍ତି ।

ମହାଯାତ୍ରାର ତୃତୀୟ ସର୍ଗରେ, ଉତ୍କଳର ମହେନ୍ଦ୍ର କାନ୍ତାର, ସାତକୋଶିଆ ଗଣ୍ଡ, ମହାନଦୀ, ବୈତରଣୀ-ସନ୍ନିବା ଗୋନାସିକା, କପିଳାସ, ଟଦେଉଳର୍ଗର ପ୍ରଭୃତି ପବିତ୍ର କମ୍ରା ଦର୍ଶନୀୟ ବନ, ନଦୀ, ପର୍ବତମାନ ପାଣ୍ଡବମାନଙ୍କୁ ଅଗ୍ନି ଦେଖାଇଚନ୍ତି । ରେବା, ଚିତ୍ରକୂଟ ତାପ୍ତିଆଦି ଚିତ୍ର ସଂକ୍ଷେପରେ ଶେଷ ହୋଇଛି । ତତ୍ପରେ ସହ୍ୟାଦ୍ରିରେ ସମସ୍ତେ ଉପନୀତ ହୋଇଛନ୍ତି । ଅଗ୍ନି ତାହାର ବର୍ଣ୍ଣନା କରି ଉପସଂହାର କରିଛନ୍ତି—

କାଲଠାରୁ ଆଉ—
ତୁମ୍ଭସଙ୍ଗେ ଭେଟ ମୋର ନୋହିବ ମରତେ,
ଦ୍ୱାପରର ଶେଷ ଆଜ; ଏହି ନଶା ଯୋଗେ
ଓହ୍ଲାଇବେ ଦଳବଳେ କଳିଭବଧାମେ,
ନିଷିଦ୍ଧ କଳିରେ ଦେବ ମାନବର ଭେଟ,
ଇଚ୍ଛା ଯେବେ, ମୋର ସଙ୍ଗେ ଚାଲ କୁରୁମଣି
ଏହି ଶୈଳଶୃଙ୍ଗେ ବସି ଦେଖିବ କୌତୁକେ,
ଭବେ କଳି ଅବତାର ମୋର ଦିବ୍ୟାଲୋକେ
ସତ୍ତ୍ୱଗୁଣୋଜ୍ଜ୍ୱଳ ଏକା ତୁମ୍ଭର ଲୋଚନେ
ସହିବ ସେ ଦିବ୍ୟ ଜ୍ୟୋତି··· ।

ଏଠାରେ ଅଗ୍ନିଙ୍କ ବକ୍ତବ୍ୟ ସହିତ ଆଦାମ ପ୍ରତି ମାଇକେଲ୍‌ଙ୍କ ବକ୍ତବ୍ୟର ସାମ୍ୟ ଓ ବୈଷମ୍ୟ ଲକ୍ଷ୍ୟ କରାଯାଉ —

Know I am sent
To show thee what shall come to future day's,
To thee and to thy off-spring good with bad

Digitized by PPRACHIN, SOA

Expect to hear, Supernatural Grace contending
With sinfulness of man······

ଅବଶ୍ୟ ଅର୍ଗ୍ଗିଙ୍କ ବକ୍ତବ୍ୟର ଏହା ଉଦ୍ଧୃତ । ମାତ୍ର ଧର୍ମରାଜ ଯୁଧିଷ୍ଠିରଙ୍କ କଳ୍ପିତ ମିଥ୍ୟାକଥନ ପାପର ପରିଣାମସ୍ୱରୂପ ତାଙ୍କୁ ଦେଶର ଭବିଷ୍ୟତ ଚିତ୍ର ଦେଖାଇବା ନିମନ୍ତେ ସେ 'ଦେବାଦେଶ' ପାଇ ନ ଥିଲେ । ଅର୍ଗ୍ଗିଙ୍କ ପ୍ରତି ଦେବାଦେଶ ଥିଲା—କଳିଯୁଗରେ ଉତ୍କଳରେ ଧର୍ମର ଗୃହଗୋଟି କ୍ଷେତ୍ର ପ୍ରତିଷ୍ଠା କରିବା ନିମନ୍ତେ । 'ସହ୍ୟାଦ୍ରି' ପର୍ଯ୍ୟନ୍ତ ସେ ଯୁଧିଷ୍ଠିର ପ୍ରଭୃତିଙ୍କର ସ୍ୱତଃପ୍ରବଣ ସହଚର ହୋଇଛନ୍ତି । ମାତ୍ର ଏଠାରେ ଦେବତା ମାଇକେଲ୍ ପ୍ରଥମ ମଣିଷ ଆଡାମ୍‌ର ଅର୍ଜିତ ପାପର ପରିଣାମ ରୂପେ ଜଗତରେ ପାପ, ରୋଗ, ମୃତ୍ୟୁ ଇତ୍ୟାଦିର ଭୟାବହ ଭବିଷ୍ୟତ ଦୃଶ୍ୟମାନ ତାକୁ ହିଁ ଦେଖାଇବାକୁ ଆଦିଷ୍ଟ ହୋଇଥିଲେ ।

ମହାପ୍ରସ୍ଥାନ-ବିଷୟର ସ୍ପଷ୍ଟ ଅବବୋଧ ପାଇଁ କବି ମିଲ୍‌ଟନ୍ (୧୬୦୮-୭୪) ଏବଂ ତାଙ୍କର ମହାକାବ୍ୟ Paradise Lostର ଯଥାକ୍ରମେ ପ୍ରାସଙ୍ଗିକ ବ୍ୟକ୍ତିତ୍ୱ ଏବଂ ଆଖ୍ୟାନଭାଗର ସଂକ୍ଷିପ୍ତ ପରିଚୟ ଦିଆଯାଉଛି । ମିଲ୍‌ଟନ୍ ପ୍ୟୁରିଟାନ୍, ନୀତିବାଦୀ, ଶୁଚିବାଦୀ । ବାଇବେଲ୍ ଓ ହିବ୍ରୁ ପୁରାବୃତ୍ତର ଅବଲମ୍ବନରେ ଆଦାମ୍ ଓ ଇଭ୍‌ଙ୍କର ନିଷିଦ୍ଧ ଫଳ ଭକ୍ଷଣର ପରିଣାମକୁ ଏକ ବିରାଟ ରୂପକ-କାବ୍ୟ-ଫଳକରେ ଅଙ୍କିତ କରିଛନ୍ତି । ସେ ଫଳର ବୃକ୍ଷ ଥିଲା ଜ୍ଞାନବୃକ୍ଷ । ଶୈତାନ୍‌ର ପ୍ରେରଣାରେ ଇଭ୍ ଆଦାମ୍‌କୁ ଫଳ ତୋଳି ଭକ୍ଷଣ କରିବାକୁ ପ୍ରବର୍ତ୍ତାଇଛି । ତାହା କରିବା ସଙ୍ଗେ ସଙ୍ଗେ ଜ୍ଞାନ, ଲଜ୍ଜା, ଭୟ ଇତ୍ୟାଦି ପାପର ରୂପକମାନଙ୍କୁ ପ୍ରକଟ କରିଛି । ଏଇ ଅପରାଧରେ ସେ ଦୁହିଁଙ୍କୁ ସ୍ୱର୍ଗ ଇଡେନ୍‌ରୁ ବିଦାୟ ନେବାକୁ ପଡ଼ିଛି । ଶୈତାନ ବି ସର୍ପରେ ପରିଣତ ହୋଇଛି ।

ଏଇ ଘଟଣାଟି ରୂପକତା ଓ ପ୍ରତୀକତାରେ ଏପରି ପ୍ରଭାବଶାଳୀ ଯେ ଏହାକୁ ଉପଜୀବ୍ୟ କରି ବହୁ ଆଲେଖ୍ୟ ଅଙ୍କିତ ହୋଇଛି । ଦୁଇଟି ପ୍ରସିଦ୍ଧ

Digitized by PPRACHIN, SOA

ପ୍ରାକ୍-ମିଲ୍‌ଟନ୍ ଆଲେଖ୍ୟର ଦୃଷ୍ଟାନ୍ତ ଦିଆଯାଉଛି । ମାସାଚିଓ (୧୪୦୧-୨୮) ଅଙ୍କନ କରିଥିଲେ ବ୍ରାଙ୍କାଚ ଗୃପେଲ୍‌ରେ ଆଦାମ ଓ ଇଭ୍‌ଙ୍କର 'ସ୍ୱର୍ଗରୁ ବିତାଡ଼ନ' (Expulsion from Paradise) ଫ୍ରେସ୍କୋ, ଏବଂ 'ବଡ' ଲୁଇ କନାକ୍(୧୪୭୨-୧୫୫୩) ଅଙ୍କନ କରିଥିଲେ—ତାଙ୍କ ଅପରାଧୀ 'ଆଦାମ ଏବଂ ଇଭ୍, ସର୍ପ'—ଯାହା ଏବେ ବର୍ଲିନ ଡାହ୍ଲେମ୍‌ରେ ସଂରକ୍ଷିତ । ମିଲ୍‌ଟନ୍‌ଙ୍କର ନିମ୍ନୋକ୍ତ ବର୍ଣ୍ଣନାରୁ ମନେହୁଏ ଯେ ଏଇ ଉଭୟ, ଅନ୍ତତଃ ତନ୍ମଧ୍ୟରୁ ଗୋଟିଏ, 'ସ୍ୱର୍ଗରୁ ବିତାଡ଼ନ'ର କରୁଣ ଆଲେଖ୍ୟ ଦେଖି ପ୍ରେରଣା ଲାଭ କରିବେ—

They hand in hand with wandering steps
and slow.
Through Eden took their solitary way.

ସିସ୍‌ଟାଇନ୍ ଚର୍ଚ୍ଚର ଛାତରେ ମାଇକେଲ ଆଞ୍ଜେଲୋ (୧୪୭୫-୧୫୬୪) ଆଦାମ୍ ଓ ଇଭ୍ ସୃଷ୍ଟିଠାରୁ ଆରମ୍ଭ କରି ପ୍ରଳୟ (Flood) ପର୍ଯ୍ୟନ୍ତ ଆଙ୍କିଥିବା ମହାନ୍ ଚିତ୍ର ପ୍ରବାହ ମଧ୍ୟ ମିଲ୍‌ଟନ୍‌ଙ୍କୁ ପ୍ରେରଣା ଦେଇଥିବ ।

ମିଲ୍‌ଟନ୍ ତାଙ୍କର ସମଗ୍ର କାବ୍ୟର ସାରମର୍ମ ଭାବରେ କହିବାକୁ ଚାହାନ୍ତି—ପରମୋଦାର ଓ ମଙ୍ଗଳମୟ ଈଶ୍ୱର ପାପ (evil) ତଥା ଶୈତାନକୁ ମଧ୍ୟ ସୃଷ୍ଟି କରିଛନ୍ତି । ସ୍ୱର୍ଗ ବା ଇଡ଼େନ୍‌ରେ ଘଟିତ ପତନପରେ ପରି ଭବିଷ୍ୟତରେ ପାପର ପ୍ରଭାବରୁ ଏବଂ ଶୈତାନର କର୍ତ୍ତୃତ୍ୱରୁ ଜଗତର ବି ପତନ ଘଟିବ । ତହିଁରୁ ଉଦ୍ଧାର ନିମନ୍ତେ ମଣିଷକୁ ନାହିଁର କରିବାକୁ ହେବ ଚିରନ୍ତନ ଶକ୍ତିସ୍ୱରୂପ ଈଶ୍ୱରଙ୍କଠାରେ ଆତ୍ମସମର୍ପଣ ଓ ବିଶ୍ୱାସ—ତା' ସହିତ ମଣିଷ ପ୍ରତି ଈଶ୍ୱରଙ୍କ ସକଳ ଆଚରଣର (କରି କରାଉଥାଏଁ ମୁହିଁ କିମ୍ବା ଯଥା କଦ୍ଯୁକ୍ତୋକ୍ତିସ୍ପ୍ର ତଥା କରେମି ହବର) ସ୍ୱୀକାର ଓ ସମର୍ଥନ । ନିଶ୍ଚୟ ଆଦାମ୍ ଓ ଇଭ୍‌ଙ୍କୁ ଅବଶ୍ୟ କବି ସାନ୍ତ୍ୱନାପ୍ରଦ ଭବିଷ୍ୟତ ବାଣୀ

Digitized by PPRACHIN, SOA

ଶୁଣାଇଛନ୍ତି ଯେ—ସମସ୍ତ ଅଶିବ, ଜଗତର ତ୍ରାଣକର୍ତ୍ତା ରୂପେ ଈଶ୍ୱରପୁତ୍ର (ଖ୍ରୀଷ୍ଟ) ଧରାଧାମରେ ଅବତୀର୍ଣ୍ଣ ହେବେ ଏବଂ ମଣିଷକୁ ମୁକ୍ତିମାର୍ଗ ବତାଇବେ ।

ଯୁଧିଷ୍ଠିରଙ୍କ ପକ୍ଷରୁ ସମ୍ଭବତଃ ରାଧାନାଥ ବର୍ଣ୍ଣନ କରିଛନ୍ତି ଯେ, କୃଷ୍ଣଙ୍କ ମହାପ୍ରସ୍ଥାଣ ବା ମହାପତନ ପରେ କଳି (Evil) ଶୈତାନ ପରି ନଗର କର୍ତ୍ତୃତ୍ୱ ଜାହିର କରିବାକୁ ଦଳବଳେ ଆସୁଛି । ଚୂଡ଼ାନ୍ତ ପରିଣତି ରୂପେ ଈଶ୍ୱରପୁତ୍ର ଖ୍ରୀଷ୍ଟଙ୍କ ପରିବର୍ତ୍ତେ କବିଙ୍କ ମନରେ କି ପରିକଳ୍ପନା ଥିଲା, ତାହା ଜାଣିବା ସମ୍ଭବ ନୁହେଁ, ତଥାପି ମନଭିତରୁ କଳ୍ପନା ଭଙ୍ଗିମାରେ —ତାହା କ'ଣ ଜଗନ୍ନାଥ ? —ସର୍ବଧର୍ମ-ସମନ୍ୱୟବାଦୀ, ସାମ୍ୟମୈତ୍ରୀ-ସେବାର ପ୍ରତୀକ ଓ ପ୍ରତିନିଧି ଜଗନ୍ନାଥ ? କାରଣ କଳିକାଳରେ ନୀଳାଚଳକୁ ପ୍ରଭୁଙ୍କର ମନୋନୀତ ମର୍ତ୍ତ୍ୟ-ଲୀଳାକ୍ଷେତ୍ର ରୂପେ ଏବଂ ଏକମାତ୍ର ଧର୍ମଦ୍ୱୀପ ଜଳିବାରେ ପୀଠରୂପେ କବି ମହାସମାରୋହେ ସହକାରେ ଉପସ୍ଥାପନା କରିଛନ୍ତି ।

ମିଲ୍‌ଟନ୍ ପ୍ରଥମେ ଦଶଟି ପର୍ବ (book)ରେ ପାରାଡ଼ାଇଜ୍ ଲଷ୍ଟ୍ ଲେଖିଥିଲେ; ସାତବର୍ଷ ପରେ (୧୬୭୪)ରେ ତାହାକୁ ବାର ପର୍ବରେ ବିଭକ୍ତ କରି ତହିଁରେ କାବ୍ୟିକ କ୍ରିୟାକର୍ମର ସାରାଂଶ ରୂପେ Argument ଯୋଗ କଲେ । ଉପରସୂଚିତ ପ୍ରସ୍ତାବନାବିଷୟ ବର୍ତ୍ତମାନ ଆଲୋଚ୍ୟ ଏକାଦଶ ପର୍ବ ଉପରେ ପ୍ରତିଷ୍ଠିତ । ଆଲୋଚନାର ସୁଗମତା ପାଇଁ ତହିଁରୁ ଉଦ୍ଧାର କରା-ଯାଉଛି ।

God···sends Michael with a band of cherubin to dispossess them; but first reveal to Adma) (future things; Michael's coming down, Adam shows to Eve certain ominious signs; discerns Michael's approach, goes out to meet him, the Angel denounces their departure.

Digitized by PPRACHIN, SOA

Eve's lamentation Adam pleads but submits; the Angel leads him up to a high hill, sets before him a vision what shall happen till the flood, (The complete poems of John Milton : Harvard clasics).

ଭବିଷ୍ୟତର ଉନ୍ମୋଚନ, ମାଇକେଲଙ୍କ ସଙ୍କେତସୂଚୀ ଆଗମନ. ସହିତ ଅଗ୍ନିଙ୍କ ସାମୁଦ୍ରିକ ଆବିର୍ଭାବ (ମହାଭାରତରୁ ଗୃହୀତ ଓ ଏଠି ସମନ୍ୱିତ), ଆଦାମକୁ ମାଇକେଲ୍ ଉଚ୍ଚ ପର୍ବତକୁ (ଅର୍ଥାତ୍ ଓରେବ୍ ବା ସିନାଇକୁ) ନେବାପରି ଯୁଧିଷ୍ଠିରଙ୍କୁ ଅଗ୍ନି ସହ୍ୟାଦ୍ରି ଶିଖରକୁ ନେବା, ଇଭ୍ ପତନଯୋଗୁ ବିଳାପ କରିବା ପରି ଦ୍ରୁପଦନନ୍ଦିନୀ କାନ୍ଦି କାନ୍ଦି ଯୁଧିଷ୍ଠିରଙ୍କୁ ନିବେଦନ କରିବା—କଥାମାନ ସମଭିତ୍ତିକ; ଏ ଦୃଷ୍ଟିରୁ ବିଚାରିଲେ ରାଧାନାଥ ‘ମହାଯାତ୍ରା’ ନିମନ୍ତେ ଏ ଆଦର୍ଶ ଗ୍ରହଣ କରିଛନ୍ତି, ବ୍ୟାପକତାର କ୍ୟାନ୍‌ଭାସ୍‌ରେ । କୃଷ୍ଣଙ୍କର ବିଶ୍ୱରୂପଦର୍ଶନ କରିଥିବା ଅର୍ଜ୍ଜୁନଙ୍କୁ ବି ସେ ଅଗ୍ନିଙ୍କର ଦିବ୍ୟାଲୋକନ ଶକ୍ତି ଦେଇନାହାନ୍ତି—ଦେଇଛନ୍ତି କେବଳ ପୁଣ୍ୟଶ୍ଳୋକ ଯୁଧିଷ୍ଠିରଙ୍କୁ । ଆଦାମ୍ କ’ଣ, ଯୁଧିଷ୍ଠିର କ’ଣ—ଜଣେ କେବଳ ଭବିଷ୍ୟତର ଦୃଶ୍ୟ ଦେଖିବାକୁ ଅଧିକାରୀ । ନିଶ୍ଚିତ ଆଦାମ୍ ନିଜର ପାପ ଫଳରୁ ଏବଂ ଧାର୍ମିକ ଯୁଧିଷ୍ଠିର ପ୍ରଜାବତ୍ସଳ, ହିତୈଷୀ ତଥା ଭଗବତପ୍ରେମୀ ଥିବାରୁ ଏ ଅଧିକାରଭାଗୀ; ତେବେ, ଏ ତାରତମ୍ୟ ନିମିତ୍ତ ମାତ୍ର । ବିଦେଶୀ ବିଭବକୁ ଦେଶୀ ବିଭବ ସହିତ ଏକାକାର ଓ ଆପଣାର କରିବା ଲାଗି କବି ରାଧାନାଥ ଯୁଧିଷ୍ଠିରଙ୍କୁ ପ୍ରଶସ୍ତ ରୂପେ ଘେନିଛନ୍ତି । ଯେତେବେଳେ ଅଗ୍ନି ଯୁଧିଷ୍ଠିରଙ୍କୁ ଦିବ୍ୟାଞ୍ଜନ ପିନ୍ଧାଇବେ ସେ ଅବସ୍ଥାକୁ ରାଧାନାଥ କାବ୍ୟର ଷଷ୍ଠ ସର୍ଗକୁ ନେଇଯାଇଛନ୍ତି । ବସ୍ତୁତଃ ତାହା ମାଇକେଲ୍ ଆଦାମକୁ ଦିବ୍ୟଦୃଷ୍ଟି-ଶକ୍ତି ଦେବାର ରୂପାନ୍ତର । ବ୍ୟାସ ସଞ୍ଜୟଙ୍କୁ ଦିବ୍ୟଦୃଷ୍ଟି ସାହାଯ୍ୟରେ ମହାଭାରତ ଯୁଦ୍ଧ ଦେଖିବା ଆଖ୍ୟାନ ପ୍ରସଙ୍ଗଦୃଷ୍ଟିରୁ ଦୂରତର, ହୁଏତ ତାହା ଯୁଧିଷ୍ଠିରଙ୍କ ନେତ୍ରରେ ଅଗ୍ନିଙ୍କ ଦ୍ୱାରା ଦିବ୍ୟ ଦୃଷ୍ଟିଶକ୍ତି ପ୍ରସରିବାର ବିଷୟକୁ କେବଳ

Digitized by PPRACHIN, SOA

ସମର୍ଥନ କରୁଛି । ଅପରନ୍ତୁ, ଅନ୍ୟାନ୍ୟ ପରିପ୍ରେକ୍ଷୀରୁ ସୂକ୍ଷ୍ମ ଭାବରେ ବିଚାର କଲେ Argumentରେ ପ୍ରଚୁର ତାରତମ୍ୟ ବାରି ହେବ ।

ଚତୁର୍ଥ ସର୍ଗର କଥା । ସ୍ୱର୍ଣ୍ଣମେଘରେ ଚନ୍ଦ୍ରାମଗ୍ନ ଦେବସଭାର ଚନ୍ଦ ଏବଂ କଳିସେନାର ଆଗମନ ଦୃଶ୍ୟ ଦେଖିବା ପାଇଁ ଅଗ୍ନି ନଳର ତେଜୋମୟ ଦିବ୍ୟାଲୋକନ ଶକ୍ତି ଯୁଧିଷ୍ଠିରଙ୍କୁ ଦେଇଛନ୍ତି । ଏଠି ଦେବାଦେବୀମାନେ ଓ କଳିର ସେନାନାୟକ ତଥା ସେବକ ପରିଚାରମାନେ—ସମସ୍ତେ ରୂପକାତ । ନିର୍ଗୁଣାବସ୍ଥାରୁ ସଗୁଣ—ଅଦୃଶ୍ୟାବସ୍ଥାରୁ ଦୃଶ୍ୟମାନ—ଅରୂପରୁ ରୂପାନ୍ୱିତ । ଭଲ ଓ ମନ୍ଦ ଗୁଣ ବା ପ୍ରବୃତ୍ତିମାନଙ୍କୁ ମୂର୍ତ୍ତିମନ୍ତ (Personified) କରି ରୂପକ (allegorical) ଚରିତ୍ର ସାହାଯ୍ୟରେ ପ୍ରାଚ୍ୟ ଏବଂ ପାଶ୍ଚାତ୍ୟ ଉଭୟ ଦେଶରେ ନାଟକ ଏବଂ କାବ୍ୟମାନ ରଚନା କରାଯାଇଛି । ୧୧ଶ ଶତାବ୍ଦୀର କୃଷ୍ଣମିଶ୍ରଙ୍କ ପ୍ରଣୀତ ପ୍ରବୋଧଚନ୍ଦ୍ରୋଦୟ ନାଟକରେ ବିବେକ, ଜ୍ଞାନ, ମୋହ, ଦମ୍ଭ ଓ ଅହଙ୍କାର ପ୍ରଭୃତି ଚରିତ୍ର ପ୍ରତୀକାତ, ଦୃଶ୍ୟମାନ୍ । ଭାରତୀୟ ନାଟ୍ୟକ୍ଷେତ୍ରରେ କନିଷ୍କକାଳୀନ ଅଶ୍ୱଘୋଷଙ୍କ ଶାରିପୁତ୍ର ପ୍ରକରଣର ଏକ ଦୃଶ୍ୟରେ ବୁଦ୍ଧି, କୀର୍ତ୍ତି, ଧୃତି ଆଦି ପ୍ରତୀକାତ ତତ୍ତ୍ୱ ଚରିତ୍ରଙ୍କ ମଧ୍ୟରେ ଭଗବାନ ବୁଦ୍ଧଙ୍କ ଉପସ୍ଥିତି ଉପସ୍ଥାପିତ । ୧୩ଶ ଶତାବ୍ଦୀରେ, କୃଷ୍ଣମିଶ୍ରଙ୍କ ଅନୁସରଣରେ ଯଶଃପାଳ ଏ ଶ୍ରେଣୀୟ ମୋହରାଜପରାଜୟ ନାଟକ ଲେଖିଥିଲେ । ଏ ବିଚାର କଳା କେବଳ ଆମ ଦେଶରେ ନୁହେଁ, ୧୫ଶ ଶତାବ୍ଦୀ ବେଳକୁ ଇଂରେଜୀ ସାହିତ୍ୟରେ ନୀତିଶିକ୍ଷା ନାଟକ—(morality play) ମାନ ମଧ୍ୟ ଏହି ଅରୂପରୁ ସରୂପ ପଦ୍ଧତିରେ ରଚିତ । ଶିଳ୍ପିକବି ରାଧାନାଥଙ୍କ ଦୃଷ୍ଟିରୁ କହିବାର କଥା—ସେ ତାଙ୍କର ପ୍ରଚୁର ସଂସ୍କୃତ ସାହିତ୍ୟପ୍ରେମ ଯୋଗୁଁ ପ୍ରଖ୍ୟାତ ପ୍ରବୋଧଚନ୍ଦ୍ରୋଦୟ ନାଟକ ସମ୍ପର୍କରେ ଅବହିତ ଥିବେ । ପୁନଶ୍ଚ, ବାଲ୍ମୀକି-ରାମାୟଣ ପାଠରୁ ଦେବସଭାର ସ୍ୱର୍ଗୀୟ ଦେବୀରୂପର କଳ୍ପନା ପାଇଁ ଶୋକ-ମଳିନା ସୀତାଙ୍କଠାରେ ଅଗ୍ନିଶିଖା, ସ୍ମୃତି, ଋଦ୍ଧି, ଶ୍ରଦ୍ଧା, ଆଶା, ବୁଦ୍ଧି, କୀର୍ତ୍ତି ଆଦି ନିର୍ଗୁଣାତ୍ମକ (abstract) ଉପମାନର ସମୂହର ଉତ୍ପ୍ରେକ୍ଷା-କର୍ମରୁ । ୧ ରାଧାନାଥ ପ୍ରେରଣା ପାଇଥାଇପାରନ୍ତି, କିମ୍ବା ଏ ଧରଣର

୧ ସମାଜ ସମ୍ପର୍କ ଓ ଆଲେଖନକଳା—ରଙ୍ଗରେଖା (୧)—ପୃ-୬ ।

Digitized by PPRACHIN, SOA

ପାଠରେ ସେ ଅଭ୍ୟସ୍ତ ହୋଇଥିବା ସମ୍ଭବ । ଏ ପ୍ରସଙ୍ଗ ରାଧାନାଥଙ୍କ କବି-ମାନସ ତଥା ଶିଳ୍ପୀମାନସର ଭକ୍ତି-ପ୍ରସୂତ ଦିଗରୁ ମାତ୍ର କୁହାଯାଇଛି । ତେବେ, ଏ ସମ୍ଭାବିତ ଦିଗଟି ଗୌଣ । (ଏହାବ୍ୟତୀତ ଭାରତୀୟ ଓ ଗ୍ରୀସୀୟ ପୁରାଣରେ ଏଭଳି ରୂପକ ଚରିତ୍ରାୟନ ଥିବାରୁ ମିଲ୍‌ଟନ୍, ସ୍ପେନ୍‌ସର ବା ରାଧାନାଥଙ୍କର ଏଥିରେ ମୌଳିକତା ନାହିଁ ।)

ଏ କ୍ଷେତ୍ରରେ ଦେବସଙ୍ଘ ଓ କଳଙ୍କେନାର ପରିକଳ୍ପନା ରାଧାନାଥ ମୁଖ୍ୟତଃ କରିଥିବେ । ରଜା ଆର୍ଥରଙ୍କର ଗୋଲ ଟେବୁଲ ଯୋଦ୍ଧୃପରିଷଦ (Round Table Knights)ର ଆଦର୍ଶରେ—ସ୍ପେନ୍‌ସରଙ୍କ ପ୍ରଣୀତ Faerie Queeneରୁ, ତଥା ଶ୍ରୀହର୍ଷଙ୍କ ନୈଷଧୀୟ ଚରିତରୁ । ଏ ବିଷୟର କିଞ୍ଚିତ ବିଶ୍ଲେଷଣ କରଯାଉ । ସ୍ପେନ୍‌ସର (୧୫୫୨-୯୯) Faerie Queeneକୁ ବାରଟି ପର୍ବରେ ସମାପ୍ତ କରିବାର ମନସ୍ଥ କରିଥିଲେ, ମାତ୍ର ଛ'ଟି ପର୍ବରେ ତାହା ଅସମ୍ପୂର୍ଣ୍ଣ ହୋଇ ରହିଯାଇଛି । ଏ ପ୍ରତି ପର୍ବ ରୂପକ-ବନ୍ତ (allegorical) ଏବଂ ପ୍ରତିଟିରେ ସ୍ୱତନ୍ତ୍ର ଯୋଦ୍ଧା ନାୟକ । ତେଣୁ କାବ୍ୟର ସମଗ୍ରତା ଦୃଷ୍ଟିରୁ ଅସଂହତର ପ୍ରତୀତ ଜନ୍ମେ । ଏ ଯୋଦ୍ଧାମାନେ ଦୁଃସାହସିକ ଅଭିଯାନ କରି ଅଜାସୁର (dragon) ରାକ୍ଷସ ଆଦିଙ୍କୁ ନିଧନ କରନ୍ତି, ପ୍ରବଞ୍ଚକ ଯାଦୁକରଙ୍କ କବଳରୁ ସୁନ୍ଦରୀଙ୍କୁ ରକ୍ଷାକରନ୍ତି । ଏମାନଙ୍କର ସାଧାରଣ ଅପଶତ୍ରୁ ହେଉଛନ୍ତି—କ୍ରୋଧ, ଈର୍ଷ୍ୟା, ହତ୍ୟା, ଭ୍ରାନ୍ତି, ଅହଙ୍କାର, ନୈରାଶ୍ୟ, ପ୍ରବଞ୍ଚନା, ଶାଠ୍ୟ, ଲୋଭ, ଉଦରମ୍ଭରିତା ଇତ୍ୟାଦି । ଏ ଯୋଦ୍ଧୃ-ପରିଷଦର ନାୟକ ହେଉଛନ୍ତି ରାଜକୁମାର ଆର୍ଥାର—ଔଦାର୍ଯ୍ୟ—(magnificence)ର ପ୍ରତିନିଧି; ସେ ପ୍ରତି ପର୍ବ ସହିତ ସଂଯୁକ୍ତ ଏବଂ ସମସ୍ତ ପର୍ବ ମଧ୍ୟରେ ଯୋଗସୂତ୍ର । ପ୍ରଥମ ପର୍ବର ଶୌଚର ପ୍ରତିନିଧି ରେଡ଼କ୍ରସ ଯୋଦ୍ଧା (knight), ଦ୍ୱିତୀୟରେ ତପଂ ବା ସଂଯମର ପ୍ରତୀକ ସାର୍‌ଗୁୟନ୍, ତୃତୀୟରେ ସତୀତ୍ୱ ବା ଶୁଦ୍ଧିର ପ୍ରତିନିଧି ନାରୀଯୋଦ୍ଧା ବ୍ରିଟୋମାର୍ଟ, ଚତୁର୍ଥରେ ବନ୍ଧୁତ୍ୱର ପ୍ରତିନିଧି ଟ୍ରିଆମଣ୍ଡ ଓ କାମ୍ବେଲ୍, ପଞ୍ଚମରେ ନ୍ୟାୟର ପ୍ରତୀକ ଆର୍ଟେଗାଲ, ଷଷ୍ଠରେ ବିନୟ ବା ଶିଷ୍ଟାଚାରର ପ୍ରତୀକ ଯୋଦ୍ଧା କାଲିଡ଼ୋର । ଅନ୍ୟପକ୍ଷରେ,

Digitized by PPRACHIN, SOA

ଏହି ଅଙ୍କିତ ପ୍ରତ୍ୟେକ ଯୋଦ୍ଧା ସ୍ପେନ୍‌ସରଙ୍କ ସମକାଳୀନ ରାଣୀ ଏଲିଜାବେଥଙ୍କ ସମୟର ବହୁ ବାସ୍ତବ ବ୍ୟକ୍ତିଙ୍କର ରୂପକ ଚିତ୍ର । ଦୃଷ୍ଟାନ୍ତ ସ୍ୱରୂପ ନିଜେ ରାଣୀ ଏଲିଜାବେଥ୍ହିଁ ପରୀରାଣୀ (faerie queene) ଗ୍ଲୋରିଆନା— ଯାହାଙ୍କ ଦରବାରରୁ ଯୋଦ୍ଧାଙ୍କ ଦୁଃସାହସିକ ଅଭିଯାନ (adventure) ଆରମ୍ଭ ହୁଏ । ଏଲିଜାବେଥ ପୁନଶ୍ଚ ପ୍ରତୀକତା କରନ୍ତି ସତ୍ୟର ପ୍ରତିନିଧି ଉନା, ଶୁଦ୍ଧିର ପ୍ରତିନିଧି ବ୍ରିଟୋମାର୍ଟ୍ ଏବଂ ସତୀତ୍ୱର ଅନ୍ୟ ପ୍ରତିନିଧି ବେଲ୍‌ଫିବ୍‌ଙ୍କର ।

ଏ ପ୍ରସଙ୍ଗରୁ ମହାଯାତ୍ରା ସଂକ୍ରାନ୍ତ ତିନୋଟି ଦିଗନ୍ତ ଉଦ୍‌ଘାଟିତ ହୁଏ । ପ୍ରଥମରେ—ଆର୍ଥରୀୟ ଯୋଦ୍ଧୃ ପରିଷଦର ଆଲେଖ୍ୟ ପଶ୍ଚାତ୍ପଟରେ ହେଉଛି ଦେବସତ୍ତ୍ୱ । ରାଧାନାଥଙ୍କ ଦେବଦେବୀବୃନ୍ଦ ହେଉଛନ୍ତି—ଧର୍ମ, ସାହସ, ସତ୍ୟ, ନ୍ୟାୟ, ଶୌଚ, ତପ, କ୍ଷମା, ତିତିକ୍ଷା, ଆର୍ଜବ ଇତ୍ୟାଦି । ଏମାନେ ମଧ୍ୟ ସେହି ଯୋଦ୍ଧା (knight) ମାନଙ୍କ ରୂପାନ୍ତର । ଶ୍ରୀହର୍ଷଙ୍କ ନୈଷଧୀୟ-ଚରିତରେ ବର୍ଣ୍ଣିତ ଇନ୍ଦ୍ର, ଅଗ୍ନି, ଯମ, ବରୁଣ ପ୍ରମୁଖ ଆମ ପୌରାଣିକ ଦେବଗଣ ଦମୟନ୍ତୀଙ୍କ ସ୍ୱୟଂ ବରରୁ ସ୍ୱର୍ଗପ୍ରତ୍ୟାବର୍ତ୍ତନ କରିବାବେଳେ ମାର୍ଗ ମଧ୍ୟରେ କଳିସେନାର ସମ୍ମୁଖୀନ ହୋଇଥିବା ବ୍ୟାପାର ରାଧାନାଥଙ୍କ ଦେବସତ୍ତ୍ୱର ଉତ୍ସ ନୁହେଁ, ମାତ୍ର ତାହାର ସମର୍ଥକ ହୋଇପାରେ ।

ଦ୍ୱିତୀୟରେ—ଏହି ଆର୍ଥରୀୟ ଯୋଦ୍ଧାମାନେ ଯେପରି କ୍ରୋଧ, ଈର୍ଷା, ଭ୍ରାନ୍ତି, ହତ୍ୟା, ଅହଙ୍କାର, ନୈରାଶ୍ୟ, ପ୍ରବଞ୍ଚନା, ଶାଠ୍ୟ, ଲୋଭ, ଲମ୍ପଟ୍ୟ ଆଦି ତାମସିକ ବା ରାକ୍ଷସିକ ଅପଶକ୍ତିମାନଙ୍କ ସହିତ ଯୁଦ୍ଧ କରିବାକୁ ଅଭିଯାନ କରନ୍ତି; ଦମନ କରନ୍ତି—'ମହାଯାତ୍ରା' ବର୍ଣ୍ଣିତ କଳିର ସେନାନାୟକ ଓ ସେମାନଙ୍କ ସେବକମାନେ ବସ୍ତୁତଃ ସେହି ଅପଶକ୍ତିବୃନ୍ଦ । ଉପର୍ଯ୍ୟୁକ୍ତ ଏମାନେ ନୈଷଧୀୟଚରିତ-ବର୍ଣ୍ଣିତ କଳିସେନାର ସପରିବାର କାମ, କ୍ରୋଧ, ଲୋଭ, ମୋହ, ଈର୍ଷାଭଳି ସେନାପତିଙ୍କଠାରୁ ଭିନ୍ନ ନୁହନ୍ତି । ଶ୍ରୀହର୍ଷଙ୍କ 'କଳି'ର ନେତୃତ୍ୱ ଓ ନାମ ପର୍ଯ୍ୟନ୍ତ ରାଧାନାଥ ନିଜ କାବ୍ୟରେ ସ୍ୱୀକାର କରିଛନ୍ତି । ଏଠାରେ ସ୍ପେନ୍‌ସରଙ୍କ ବର୍ଣ୍ଣନା ସହିତ ଶ୍ରୀହର୍ଷଙ୍କ ବର୍ଣ୍ଣନାକୁ ରାଧାନାଥ କ୍ଷୀରନୀର

Digitized by PPRACHIN, SOA

ନ୍ୟାସରେ ତଥା ନିଜସ୍ୱ ଶିଳ୍ପକଳାରେ ସମନ୍ୱିତ ଏବଂ ଚରିତ୍ରର ବର୍ଣ୍ଣନା ଦେଇଛନ୍ତି । ରାଧାନାଥ କଳିର ସେନାନାୟକମାନଙ୍କର ଯେଉଁ ସେବକମାନଙ୍କ ବର୍ଣ୍ଣନା କରିଛନ୍ତି; ମିତଞ୍ଚ ସାରଣ୍ଡ ବର୍ଣ୍ଣେନ୍ଦ୍ର ବର୍ଣ୍ଣିତାର କବି ଶ୍ରୀହର୍ଷ ପ୍ରତ୍ୟେକଙ୍କଠାରେ ତାହା ପ୍ରାପ୍ତ କରି ନାହାନ୍ତି, ଯେଉଁଠି କହିଛନ୍ତି ତାହା କେବଳ ସୂଚନାତ୍ମକ ଏବଂ ସାଙ୍କେତିକ; 'ଲୋଭ'ର ସେବକ ଭାବରେ ଦୈନ୍ୟ, ଭୟ, ଗୈର, ବହୁଭୋଜିତା ବା ଉଦରମ୍ଭରିତା (gluttony) ଏବଂ 'ମୋହ'ର ସେବକ ଭାବରେ ପଞ୍ଚମହାପାତକର ଉଲ୍ଲେଖମାତ୍ର କରିଛନ୍ତି । 'କାମ' ବା ମଦନର ସେବକ ବିଷୟ ଅଗମ୍ୟ-ଗମନ ଭଳି କେତୋଟି ପଦରେ ଧ୍ୱନିତ ବା ସଙ୍କୋଚିତ କରି ଦେଇଛନ୍ତି । ରାଧାନାଥ ଏମାନଙ୍କର ପରିଚୟ ପ୍ରଦାନରେ ସ୍ପେନ୍‌ସର୍‌ଙ୍କୁ ପ୍ରାୟ ଛାଡ଼ିଦେଇ ମିଲ୍‌ଟନଙ୍କୁ ମଧ୍ୟ ଗ୍ରହଣ କରିଛନ୍ତି; ଅଧିକନ୍ତୁ ସ୍ୱକୀୟ ସୃଷ୍ଟି-ବିକାଶ କରିଛନ୍ତି । ଆଉ ଗୋଟିଏ କଥା ସ୍ମରଣଯୋଗ୍ୟ ଯେ କଳିର ସେନାନାୟକମାନଙ୍କ ମଧ୍ୟରେ ପାରସ୍ପରିକ ସହଯୋଗ ଉପରେ ଶ୍ରୀହର୍ଷ ହିଁ ଜୋର୍ ଦେଇଥିଲେ ସୁଦ୍ଧା ରାଧାନାଥ ଏ ଦିଗଟି ପ୍ରତି ପ୍ରାୟ ଦୃଷ୍ଟି ଦେଇ ନାହାନ୍ତି ।

କେତୋଟି ତୁଳନାତ୍ମକ ଚିତ୍ର ଦିଆଯାଉଛି । Faerie Queeneର ପ୍ରଥମ ପର୍ବର ନାୟକ ରେଡ଼କ୍ରସ୍ ନାଇଟ୍ କୌଣସି ମୋହିନୀ ବା ମାୟାବିନୀର ନିବାସରୁ ଦେଖୁଛି—

And him besides rides fierce revenging.<br>
... ... ... ... ... Wrath<br>
His eyes did hurle forth srarkeles fiery red<br>
And stared sterne on all that him beheld<br>
And ashes pale of hew and seening ded.

—Book I, Canto V.

Digitized by PPRACHIN, SOA

ଧନ୍ତଦ୍ଧଷ୍ଟପକ୍ତମୁକ୍ରଂପମୂର୍ତ୍ତିଥାସ୍ତୁକମଥାରୁଣମ୍
ବୁବୁଧିରେ ବିବୁଧାଃ କ୍ରୋଧମାକ୍ରୋଶାକ୍ରୋଶ ଘୋଷଣମ୍

—ନୈଷଧୀୟ ଚରିତ, ୧୭ଶ ସର୍ଗ ।

(କାମ ପକ୍ଷକୁ ସ୍ପୃହାବକ କିସ୍ୟାବଧି ସହିତ ମୂର୍ତ୍ତିମାନ୍ କ୍ରୋଧ—ଯାହା କାନ୍ଧ ସମ୍ମୁଖରେ ଦେଖୁଛନ୍ତି ଏଆଡ଼େ ସେଆଡ଼େ ଫିଙ୍ଗୁଛି । ଯାର ଦେହ କମ୍ପି-ଯାଉଛି, ଯାହା ପ୍ରତି ଆକ୍ରୋଶରୁ ହସ୍ତରେ କୋପମୁଦ୍ରା ଦେଖାଉଛି, ଯାର ଦେହ କୋପାରୁଣ, ଗାଲଗୁଲାକ କଳପରି ଗର୍ଜନ କରୁଛି ।)

ରାଧାନାଥ ସଂଶ୍ଳେଷଣରେ ଲେଖିଲେ—

ଆକ୍ରୋଶେ ଗରଜି କ୍ରୋଧ ଅଛେ କାମ ପାଶେ,
ରକ୍ତଚକ୍ଷୁ ହେତେ କି ସେ ଦହିବ ଜଗତ;

ତତ୍ପରେ ସ୍ୱକୀୟ ଢଙ୍ଗରେ ସେ ଲେଖିଲେ—

ବଜ୍ରର ଔରସେ ବାତ୍ୟାଗର୍ଭେ ଜାତ ହୋଇ
ବଡ଼ବାଗ୍ନି ସ୍ତନ୍ୟ ଚଢ଼ିଥିଲା ଯେ ସାଗରେ
ଭୂକମ୍ପ ଦୋଳରେ ସୁଖେ ଦୋହଲି ଶୈଶବେ···

‘କ୍ରୋଧ’ର ଏଭଳି ସେବକ ଥିଲା—ଯେ ଦନ୍ତରେ ନିଜର ଓଠକୁ ଧୁଙ୍କା କାମୁଡ଼ି ରକ୍ତ ବୁହାଇ ପକାଉଛି, ତାର ଭ୍ରୂକୁଟିଳକମ୍ପିତ ହେଉଛି, ସେ ସର୍ପିଣୀ ପରି ଫଁ ଫଁ ଧ୍ୱନି କରୁଛି—

ସମୁତ୍ପାଦନ୍ ଦନ୍ତୌଷ୍ଠକ୍ଷତାସୃକ୍ ଶିଷ୍ୟଂ ସ୍ୱୈଃ
ଭ୍ରୂକୁଟି ଫଣିନୀନାଦ ନିଭନିଶ୍ୱାସ ଫୁତ୍କୃତ ।।

କ୍ରୋଧର ସେଇ ସେବକକୁ ରାଧାନାଥ ନାମିତ କରିଛନ୍ତି ହତ୍ୟା—

ସହରେ ରୂପେ ତାର ଅଛଇ ସଙ୍ଗତେ
ତମ୍ପ ପ୍ରାୟେ ଫଁ ଫଁ ସନେ ନିଶ୍ୱାସି ସଘନେ···

Digitized by PPRACHIN, SOA

(ଏଠାରେ ସର୍ପିଣୀ ବା ସର୍ପ ପରିବର୍ତ୍ତେ ତମ୍ବ ଅଧିକ ସୁନ୍ଦର ହୋଇଛି । ପୁନଶ୍ଚ ସ୍ପେନ୍‌ସର-ବର୍ଣ୍ଣିତ dagger in handକୁ ରାଧାନାଥ 'କରବାଳ ହାତେ' ବୋଲି ହତ୍ୟାଠାରେ ଯୋଗ କରିଛନ୍ତି ।)

ଅଧିକନ୍ତୁ, And stared sterned on all that him beheld/As ashes pale of hew and seeming dead— ପଙ୍‌କ୍ତିକୁ ରାଧାନାଥ ଈର୍ଷାଠାରେ ଆରୋପ କରିଦେଇଛନ୍ତି ଏବଂ ଈର୍ଷା ସମ୍ପର୍କରେ ସ୍ପେନ୍‌ସର ଯେଉଁ ବର୍ଣ୍ଣନା ଦେଇଛନ୍ତି ତାହା ବ ଗ୍ରହଣ କରିଛନ୍ତି—

And next to him malicious Evic rode.
... ... ...
For death it was when any good he saw
And wept, that cause of weeping none he had
But when heard of harm he wexed
—Wondrous glad

ମନ୍ଦ ପଛେ ଆସେ ଈର୍ଷା କୃଶକଳେବର
କରାଳ କୁଟିଳ ଦୃଷ୍ଟି, ପାଣ୍ଡୁରବଦନା,
ହୃଦ ଗୃହାଣିରେ ଯାର ଯାଉଛି ଝାଉଁଳି
ଚଣ୍ଡବେଗ ତରୁଲତା, ଯଥା ତପ୍ତବାତେ,
ରୋଗକ୍ଲିଷ୍ଟା ପ୍ରାୟେ ଦୁଷ୍ଟା ଅପ୍ରସନ୍ନା ସଦା,
ଶୁଷ୍କାସ୍ୟେ ଉପୁଜେ ହାସ୍ୟ ଯଦି କଦାଚିତେ
ସେ କେବଳ ପର ଦୁଃଖେ, ଦୁଃଖେ କାହାରକ
କାନ୍ଦିବାର ନ ଦେଖିଲେ ପକାଏ ସେ କାନ୍ଦ !

ଏଠି ଲକ୍ଷ୍ୟ କରହେବ ଯେ, ଶ୍ରୀହର୍ଷାଙ୍କିତ ଈର୍ଷାର ରୂପକୁ ରାଧାନାଥ ଆଦୌ ଗ୍ରହଣ କରନାହାନ୍ତି । କାରଣ, ଅନ୍ୟ ସ୍ତ୍ରୀ-ଅଙ୍ଗଗମନ କଲେ ସ୍ତ୍ରୀର

Digitized by PPRACHIN, SOA

ଯେଉଁ ଇର୍ଷା ଉପୁଜେ ସେଠାରେ ତାହା ହିଁ ବର୍ଣ୍ଣିତ । ଶ୍ରୀହର୍ଷ ଶୃଙ୍ଗାର ଗୀତ ପରମ୍ପର ମାନ ଇର୍ଷାକୁ ସଙ୍କୁଚିତ ଦୃଷ୍ଟିରେ ଦେଖିଥିବାରୁ ଶିଳ୍ପୀ ରାଧାନାଥ ତାହା ଗ୍ରହଣ ନଥିବା ସମ୍ଭବ ।

କଳିର ଅଗ୍ରଣୀ ସେନାପତି ବା ମଦନର ସେବକ ରୂପେ ଶ୍ରୀହର୍ଷ କାହାର ନିର୍ଦ୍ଦିଷ୍ଟ ନାମ ନ ଦେଇ ସୂଚେଇ ଦେଇଛନ୍ତି—

ଆଗମ୍ୟାର୍ଥଂ ଭ୍ରମନ୍ପ୍ରାଣାଃ ପୃଷ୍ଟୁର୍ଭ୍ରାନ୍ତିକୃତ ଶ୍ରିଦ୍ଧ୍ରସ୍ଥଃ···

ଅର୍ଥାତ୍ ଅଗମ୍ୟା (ନିଜ ଦାମ୍ପତ୍ୟସ୍ଥାଠାରୁ ଆରମ୍ଭ କରି ବାରାଙ୍ଗନା ପର୍ଯ୍ୟନ୍ତ) ଅଭିଗମନ ଫଳରେ ମୋହ, ନିପଦାଂଶ ଭଳି ରୋଗର ଧ୍ୱନି (suggestion) ରାଧାନାଥଙ୍କ ଲେଖନୀରେ ସ୍ପଷ୍ଟ ହୋଇଛି—

ପୂତିବୃତ ଖାତ ପ୍ରାନ୍ତେ ବାନ୍ତେୟ ଭୋଗ ଧାମା
କହେ ଶୋଭେ ପୂତି, ମାଛି ବସି ତଳେ ତଳେ
ଗଳି ଗଳି ଗ୍ଲାନ ନୃଶ୍ଳ ଅଳକ୍ଷିତ ରୂପେ
ପରଗ୍ଭର ଦଳ ମେହ ଉପଦାଂଶ ଆଦି ।

ଏଠାରେ ମନେହୁଏ, ମିଲଟନଙ୍କ ବର୍ଣ୍ଣିତ ଜଘନ୍ୟ ରୋଗଙ୍କ ହାସ୍ପି-ଟାଲରୁ ଏଇ କାମ-ଲଙ୍କର ତଥା ଇତରେତର ସହାୟକ ରୋଗମାନଙ୍କ ଚୟନରୁ ରାଧାନାଥ ଋଣୀ—

A lazar-house it seemed where in were laid
Numbers of all diseas'd all maladies of
ghastly spasm·· ···
Convulsion, Epilepsies, fierce Catarrhs,
Intestin, stone Ulcer.

ମହାଯାତ୍ରାର କାମ ବା ମଦନର ପରଗ୍ଭର ଗୋଷ୍ଠୀ, ରୂପସୀ, କାମପ୍ରବଣା ବାରାଙ୍ଗନାଙ୍କର ଗଣାଧିକରଞ୍ଜିତ ସଙ୍ଗୀତରେ ଯୁବାକୁଳଙ୍କୁ

Digitized by PPRACHIN, SOA

ସେଉଁ ଅହ୍ୱାନ···ହେ ଯୁବାକୁଳ, କ୍ଷଣମାତ୍ର ସ୍ଥାୟୀ ଯୁବାକାଳ, ମଧୁକାଳ ଏହିଟି କବନେ—ତହିଁରେ ପରବର୍ତ୍ତୀ ସବୁଜ କବିଙ୍କ ଗୀତ—ଅହା ଯୌବନ ଥରେ ଗଲେ ଆଉ ଆସେନା—ଯେପରି ଜା ଅଦୃଶ୍ୟ ଯୋଗସୂତ୍ର ସ୍ଥାପନ କରିଥିଲା, ଏଇଭଳି ମନେହୁଏ ।

ଏବେ, ତୃତୀୟ ଦିଗଟିର ବିବେଚନା କରାଯାଉ ।

(କ) ପୂର୍ବରୁ କୁହାଯାଇଛି ଯେ, ସ୍ପେନ୍ସର୍ ତାଙ୍କର ସମକାଳୀନ ଖ୍ୟାତ ରାଣୀ ଏଲିଜାବେଥ୍‌ଙ୍କୁ ପରିରାଣୀ ଗ୍ଲୋରିଆନା, ଉନା, ବ୍ରିଟୋମାର୍ଟ୍ ଓ ବେଲ୍‌ଫିବ୍ ଚରିତ୍ରରେ ପ୍ରତିବିମ୍ବିତ କରିଛନ୍ତି । ତାଙ୍କଠାରେ ରାଜ୍ୟରକ୍ଷାର ଏବଂ ରାଜନୈତିକ ଆଦର୍ଶର ଯେ ସମସ୍ତ କର୍ତ୍ତୃତ୍ୱ ରହିଛି, ଏ ଦିଗଟି ବ୍ରିଟୋମାର୍ଟ୍‌ଙ୍କଠାରୁ ଅବଧାରିତ । ସେ କାଳର ରାଲେ, ସିଡ୍‌ନି, ଡ୍ରେକ୍‌ଙ୍କ ପରି ଦୁଃସାହସୀ ଏବଂ ବେକନ୍‌ଙ୍କ ଭଳି ବିଦ୍ୱାନ୍ ବ୍ୟକ୍ତି ମଧ୍ୟ କୌଣସି କୌଣସି ନାଇଟ୍‌ର ଚରିତ୍ରରେ ଜଡ଼ିତ ଥିବେ ।

ମହାଯାତ୍ରାର ପଞ୍ଚମ ସର୍ଗରେ ଶ୍ରୀରାମଚନ୍ଦ୍ରଭଞ୍ଜ ଏବଂ ଷଷ୍ଠ ସର୍ଗରେ ବାସୁଦେବ ସୁଡ଼ଳ ଦେବ ତଥା ସଚ୍ଚିଦାନନ୍ଦ ଦେବଙ୍କର ପ୍ରଶସ୍ତି ବିନ୍ୟାସକୁ ରାଧାନାଥଙ୍କୁ ଚାଟୁସ୍ତାବକ କବିଭାବରେ. ଏ ପ୍ରଶସ୍ତି-ପର୍ଯ୍ୟାୟମାନଙ୍କୁ କାବ୍ୟ ପକ୍ଷରୁ ଦୋଷାବହ ତଥା ଅବାନ୍ତର ରୂପେ ସମାଲୋଚନା କରାଯାଇଥାଏ । ମାତ୍ର ସ୍ପେନ୍‌ସରୀୟ ପରିପ୍ରେକ୍ଷୀରୁ ଦେଖିଲେ ଜାଣିହେବ ଯେ ଏଲିଜାବେଥ୍ Faerie Queene କାବ୍ୟରେ ଅନ୍ତର୍ଭୁକ୍ତ ହୋଇଯିବା ପରି ଏ ତିନିଜଣ ରାଜପୁରୁଷ ମଧ୍ୟ ମହାଯାତ୍ରା କାବ୍ୟରେ ଚରିତ୍ରୀଭୂତ ହୋଇଛନ୍ତି । ବିଭିନ୍ନ ଚରିତ୍ରରେ ଏଲିଜାବେଥ୍ ପ୍ରତିଫଳିତ ହେବାର ସମକକ୍ଷ ଅବସ୍ଥା ପ୍ରତିଷ୍ଠା କରିବା ଦିଗରୁ ରାଧାନାଥଙ୍କ ଏପରି ସ୍ପେନ୍‌ସରୀୟ ପ୍ରୟାସ ପରିକଳ୍ପିତ ଏବଂ ଉଦ୍ଦିଷ୍ଟ । ରାଜ୍ୟରକ୍ଷା ଓ ରାଜନୈତିକ ଆଦର୍ଶର କର୍ତ୍ତୃତ୍ୱ ସୂତ୍ରରେ ଖୁଣ୍ଟି ଓ ଖଟାଙ୍କର ନାଙ୍ଗ-ନାଇଥ ବ୍ରିଟୋମାର୍ଟ ତଥା ବେଲ୍‌ଫିବ୍ ରାଣୀ ଏଲିଜାବେଥ୍‌ଙ୍କୁ ଜଣାଇଦେବା ପରି ରାଧାନାଥ ଆଶାନ୍ଧି-ଉତ୍କଳ-ଆଶା-କିଶୋର ପାଦପ ମହେନ୍ଦ୍ର ଭଞ୍ଜଙ୍କୁ ପ୍ରକାଶ

Digitized by PPRACHIN, SOA

କରିବା ନିମନ୍ତେ କୌଣସି ବିଶେଷ ଚରିତ୍ର ସୃଷ୍ଟି କରିବାର ଅବକାଶ ପାଇ ନାହାନ୍ତି । ମାତ୍ର ମହାଯାତ୍ରାରେ ନଳେ ସେ ପୃଷ୍ଠପୋଷକତା ଶ୍ରେଣୀରେ ଏକତମ ମୁଖ୍ୟ ଚରିତ୍ର, ଏଥିରେ ସନ୍ଦେହ ନାହିଁ । ସେଥିପାଇଁ ସ୍ୱୟଂ କଳି ତାଙ୍କୁ ପରାଭୂତ କରିବା ପାଇଁ ତାଙ୍କର ପୁରଭେଦଦ୍ରୋହ କରନ୍ତେ ଅଦ୍ଭୁତ ଦାନ-ବାରି-ସିକ୍ତିଲ ପୁରପ୍ରାଙ୍ଗଣରେ ପାଦ ଥୋଇ ଚିତ୍ର ହୋଇ କରିବା ପଡ଼ିଲେ । ତତ୍ପରେ ଅପମାନର ପରିଶୋଧ ନିମନ୍ତେ ମଦନ, ଅଳସ୍ୟ, କ୍ରୋଧ, ଈର୍ଷା (୧) ପ୍ରମୁଖ ସେନାପତିଙ୍କୁ ତାଙ୍କ ବିରୋଧରେ ନିଯୁକ୍ତ କଲେ ସୁଦ୍ଧା ସେମାନେ ବ୍ୟର୍ଥ ହୋଇଛନ୍ତି । ବସ୍ତୁତଃ, ବଦାନ୍ୟ ଦାନଶୀଳତା ଦୃଷ୍ଟିରୁ ଔଦାର୍ଯ୍ୟର ବିଜୟୋଦ୍ଧା ଆର୍ଥର ତଥା ରାଜ୍ୟ-ସୁରକ୍ଷା ଓ ପ୍ରଜାମଙ୍ଗଳ ଅାଦର୍ଶରୁ କାଟ୍ଟୋମାର୍ଟ ହେଉଛନ୍ତି ରାଜା ରାମଚନ୍ଦ୍ର ଭଞ୍ଜଙ୍କ ପ୍ରତୀକ-ପୀଠ । ସେହିପରି ରାଜା ସୁଡ଼ଳ ଦେବ ଦାନ ଓ ଜ୍ଞାନର ଏକତମ ପ୍ରତିନିଧି ଏବଂ କୁମାର ସଚ୍ଚିଦାନନ୍ଦ ମଧ୍ୟ ଅନୁରୂପ ଅନ୍ୟତମ ଚରିତ୍ର । ଏ ତିନି ରାଜପୁରୁଷ କଳିପ୍ରତିଦ୍ୱନ୍ଦ୍ୱୀ ତିନିଜଣ ନାଇଟ୍, ଯୋଦ୍ଧା । ସ୍ପେନ୍‌ସରଙ୍କର ଅନୁଶୀଳନ ବ୍ୟତିରେକେ ଏ ତିନୋଟି ଚରିତ୍ର-ବିନ୍ୟାସର ତାତ୍ପର୍ଯ୍ୟ ଧରିହେବ ନାହିଁ ।

ପୁନଶ୍ଚ, ସ୍ପେନ୍‌ସର ତାଙ୍କ କାବ୍ୟରେ ସମକାଳୀନ ଇଂଲଣ୍ଡର ପ୍ରତିଚ୍ଛାୟା ଦେବା ପରି ରାଧାନାଥ ନୀଳାଚଳ, ମହେନ୍ଦ୍ରଗିରି, ଯାତକୋଶିଆ, ମହାନଦୀ, ଗୋନାସିକା, ମାଳ୍ୟବନ୍ତ, କପିଳାସ, ଚିଲିକା ପ୍ରଭୃତିର ସଂସ୍ପର୍ଶରେ ଉତ୍କଳର ଅଭିବ୍ୟକ୍ତ କରିଛନ୍ତି—ମହାଯାତ୍ରାରେ ।

(ଖ) ସାଧାରଣତଃ ଆଳଙ୍କାରିକ ବିଚାର-ପରମ୍ପରାରୁ ବୀରରସର ପରିପ୍ରେକ୍ଷୀରେ କାନ୍ତକୁଳଦେବୀ, ଶୋଭିପିତୁଳ ସଂଯୁକ୍ତାଙ୍କର ପ୍ରତି-ହ୍ରଦେ-ପ୍ରତିଫଳିତ ଭୂମିକାକୁ ରସଦୂଷିତ ଓ ରସବିରୋଧୀ ବୋଲି ସମାଲୋଚନା କରାଯାଇଥାଏ । ରାଧାନାଥଙ୍କ କବିମାନସରେ ସ୍ପେନ୍‌ସରୀୟ ମହାକାବ୍ୟର

---

୧ ସ୍ପେନ୍‌ସରଙ୍କ ଚରିତ୍ରରେ ଈର୍ଷା (Envie) ପୁରୁଷ ।

Digitized by PPRACHIN, SOA

ପରିସର ଓ ପରିପ୍ରକାଶ ଦୃଷ୍ଟିରୁ ଦେଖିଲେ ବୁଝିହେବ ଯେ ସମୁକ୍ତାଙ୍କ ବର୍ଣ୍ଣିତ ଭୂମିକା ବୀରରସବିରୋଧୀ ନୁହେଁ । ଯେହେତୁ ସେ ନିଜେ ଏକ ଯୋଦ୍ଧୃନାରୀ—'ବୀରାଙ୍ଗନା'—ଶକ୍ତି ଓ ସତୀତ୍ୱର ବ୍ରିଟୋମାର୍ଟ୍ ପରି ଏବଂ ବେଲ୍‌ଫିବ୍ ପରି । ପ୍ରତିମୂର୍ତ୍ତି-ପୃଥ୍ୱୀକମ୍ପା ଯଶୋଗାଥାଧାରୀ ଦତ୍ୟ ପୃଥ୍ୱୀଙ୍କଠାରେ ତାଙ୍କର ସତୀତ୍ୱ-ନିଷ୍ଠା ସହିତ, ପିତାଙ୍କ କୋଧ ସତ୍ତ୍ୱେ ଆତ୍ମମର୍ଯ୍ୟାଦା ଏବଂ ଦେଶମର୍ଯ୍ୟାଦା ପ୍ରତି ଶୁଚି-ନିଷ୍ଠା ବର୍ଣ୍ଣନୀୟ ।

(ଗ) ସେହିପରି ଅତ୍ୟାଚାରପ୍ରମାଥୀ ଦିଲ୍ଲୀ-ଅଧିପତି ପୃଥ୍ୱୀ ଓ ପରସୂରଞ୍ଜୟୀ ଅମିତତେଜା ଅମର୍ଷୀ Faerie Queeneର ଚତୁର୍ଥ ସର୍ଗାଙ୍କିତ ବନ୍ଧୁତ୍ୱର ପ୍ରତିନିଧି ଯୋଦ୍ଧୃଯୁଗ୍ମ ଟ୍ରିଅମଣ୍ଡ୍ ଓ କାମ୍ବେଲଙ୍କର ଭାରତୀୟ ବା ଦେଶୀ ରୂପ—କ୍ଷମତାଶୀଳ ବୀରତ୍ୱ ଏବଂ ସାହସର ପ୍ରତୀକ । କଳି ତାର ସେନାନୀଙ୍କ ଈର୍ଷା ଓ କୋଧଙ୍କୁ ନିଯୋଗ କରି ଭାରତୀୟ ଭୂପାଳ ଭୂପାଳ ମଧ୍ୟରେ ଭେଦ ଘଟାଇ କାନ୍ୟକୁବ୍ଜପତି ମଦମତ୍ତ ଆର୍ଯ୍ୟଭୂମିଦ୍ରୋହୀ ଜୟଚନ୍ଦ୍ରଙ୍କୁ ଏହି ବିଡମ୍ବିତମାନଙ୍କର ଅଗ୍ରଣୀ ରୂପେ ପ୍ରକଟ କରିଛି । ତାଙ୍କର ସାହାଯ୍ୟରେ ଲୋଭ (ପରରାଜ୍ୟ ଲୋଲୁପତା), ଛଦ୍ମ (guile), ତଥା ଲମ୍ପଟ୍ୟର ପ୍ରତିମୂର୍ତ୍ତି ସ୍ୱରୂପ ଯବନରାଜ (ମହମ୍ମଦ ଘୋରି) ଥରେ ପରାଜିତ ହୋଇ ପୁଣି ପୁନର୍ବାର ମୁହଁଲାଗି ଆସିଲେ—ସଦଳବଳେ । ଏ ସମସ୍ତଙ୍କ ସହିତ ଦେଶର ସ୍ୱାଧୀନତା ରକ୍ଷା ନିମନ୍ତେ ପୃଥ୍ୱୀ ଓ ଅମର୍ଷୀ—ଦୁଇ ବନ୍ଧୁ-ନାଇଟ୍‌ଙ୍କର ଯୁଦ୍ଧ ।

ଆଦାମ୍‌କୁ ମାଇକେଲ୍ ଭବିଷ୍ୟତ ବଂଶଧରଙ୍କ ଦୁରବସ୍ଥା ପ୍ରଦର୍ଶନ କରିବାପରି, ପଞ୍ଚମ ସର୍ଗରେ ଯୁଧିଷ୍ଠିରଙ୍କୁ ଅଗ୍ନି ମଧ୍ୟ ଅନୁରୂପ ଚିତ୍ର ଦେଖାଇ-ଛନ୍ତି । ଯୁଧିଷ୍ଠିର ଅଗ୍ନିଦତ୍ତ ଦିବ୍ୟାଲୋକ ବା ଦିବ୍ୟାଲୋକନରେ ତାହା ଦେଖିଛନ୍ତି । ମିଲ୍‌ଟନ୍ ବର୍ଣ୍ଣିତ ଧର୍ମଯାଜକ (priest)ମାନଙ୍କ ଅଧଃପତନ ଚିତ୍ରର ପ୍ରେରଣାରେ କଳିକାଳରେ ଭେଦବୁଦ୍ଧିକାରୀ, ଷଟ୍‌କର୍ମରେ ଭ୍ରଷ୍ଟବ୍ରତୀ, କର୍ମକାଣ୍ଡନିଷ୍ଠ, ଅକର୍ମଣ୍ୟ ବ୍ରାହ୍ମଣଙ୍କର ସମୃଦ୍ଧି ଦେଖାଯାଉ—

Digitized by PPRACHIN, SOA

......but in their room
Wolves shall succeed for teachers grievous wolves
Who all the sacred mysteries of Heaven
To their own vile advantage shall turn
Of lucre and ambition and truth
With superstition and traditions taint
—Milton

···ଏବେ ହେତୁ ଦେଖା ଉଦ୍ରେକିବେ / ବ୍ରହ୍ମଚର୍ଯ୍ୟ ତେଜ ବିପ୍ରେ ନୋହିବେ କଳିଯୁଗେ / ଲୋଭମୋହ ଜାଲେ ପଡ଼ି ଅବିଦ୍ୟା-ସେବକ / ଚନ୍ଦ୍ରିକା-ପୀୟୂଷପାନ୍ଥୀ ଚକୋର-ଔରସେ / ଜନ୍ମିଲେ ଉଲୂକ ଅମା-ତମିର-ପ୍ରଣୟୀ / ଅକର୍ମଣ୍ୟ ଦ୍ୱିଜାତିର ହେବ ଅବଶେଷେ / ଷଟକର୍ମେ ଇଷ୍ଟ କର୍ମ ଏକମାତ୍ର ବ୍ରତ··· / ଧର୍ମକୁ କରିବେ ବିପ୍ର ଜୀବନଜୀବିକା / ମୂଢ଼ିପଣେ ଏହି ଜାତି ଏ ମନ୍ତ୍ରଲେ / ···ଏକମାତ୍ର ଦେଶ ଏହି ଭରତକୁ ମଣି / ଭାରତବାସୀଙ୍କି ବୁଡ଼ି କର୍ମକାଣ୍ଡେ ଜାଲେ / ରୁନ୍ଧିବେ, ସେ ଜାଲେ ପୁଣି ନିଜେ ହେବେ ରୁଦ୍ଧ · (ରାଧାନାଥ) ।

ପୁନଶ୍ଚ, କଳିର ତିନି ସେନାପତି ମଦନ, ଆଳସ୍ୟ ଓ ଈର୍ଷାଙ୍କ ପ୍ରଭାବ ଓ ପରାଭବରେ କ୍ଷତ୍ରିୟଜାତିର ଅଧଃପତନଟିର ଯୋଗାଯୋଗ ମାଇକେଲ୍ ଏବଂ ଅଗ୍ନି ଦେଖାଇଥିବା ଦୃଶ୍ୟରେ ରହିଛି—

The conquered also and enslaved by War
Shall with their freedom cost all virtue loose
And fear of God from whom their pietie feign'd
In sharp contest of Battle found no aide
Against invaders, therefore cold in zeal
Thenceforth shall practice how to live secure
......        ......
On what their lords shall leave them to enjoy.
—Milton

Digitized by PPRACHIN, SOA

ଯୁଦ୍ଧ (war) ଓ ସଂଘର୍ଷ (battle) ମଧ୍ୟରେ ଜଣେ ଅପଶକ୍ତି । ତାଙ୍କର ଦୃଶ୍ୟମାନ ପ୍ରତୀକ (ମହମ୍ମଦ ଘୋରଙ୍କ) ବିଦେଶୀ ବା ଯବନ ସେନାଙ୍କ ଆକ୍ରମଣରୁ ଅମର୍ଷୀଙ୍କ ଉତ୍ସାହବ୍ୟଞ୍ଜକ ବାଣୀ ଶୁଣନ୍ତୁ—

ହା ଧିକ ! ଏ ରଙ୍କ ପ୍ରାଣ ଆତଙ୍କେ ବଞ୍ଚାଇ / ଆଶୁ ମୃତ୍ୟୁ ପ୍ରଦ ରଣୁ ଅରପି ଯବନେ / ନଜର ଏ ସ୍ୱର୍ଣ୍ଣପ୍ରସୂ ଭୂମି ସନାତନୀ / ଯାଚିବ କି ଚିରଦିନ ଅନଶନ ବ୍ରତେ ? / କଳ୍ପଲତା ମୂଳେ ବସି ଚିର ଉପବାସୀ ! / ହା ଦୈବ ! ଜମ୍ବୁକ ପଶି ହର୍ଯ୍ୟଗୁହାରେ / ଗୋଇଠା ପ୍ରହାର ନେବ ତା ମୁଖ ଓଷ୍ଠାଗ / ଗ୍ରାସ ତାର, ହର୍ଯ୍ୟକ୍ଷ ତା ସହ୍ୟ ମଉନେ / .. ଅଇଁଠା-ଗୋଇଠା-ଭୋଗୀ ହେବ ଶ୍ୱାନ ପରି / ପ୍ରସାଦାର୍ଥୀ ହୁଅ ଯାଇ ଯବନ ଦୁଆରେ !

—ଗୋପୀନାଥ

ଷଷ୍ଠସର୍ଗଠାରୁ ଦଶମସର୍ଗ ପର୍ଯ୍ୟନ୍ତ ଏ ଦୁର୍ଗତିଚକ୍ରର ବର୍ଣ୍ଣନା ଇତସ୍ତତଃ ବିକ୍ଷିପ୍ତ ହୋଇଛି । ସ୍ଥୂଳତଃ, ଦିଲ୍ଲୀ ଭୂଜଙ୍ଗୀର ବିଷଦନ୍ତ ଥିଲେ ଉଭୟ ଜୟଚନ୍ଦ୍ର ଓ ପୃଥ୍ୱୀରାଜ; କାଳ ତାହା ଭାଙ୍ଗିବା ଉପଲକ୍ଷରେ, ଭାରତର ଅଧଃପତନ ପାଇଁ ସେମାନେ ଯେ ଦାୟୀ ତାହା ଇତିହାସ ସମର୍ଥିତ ସତ୍ୟ ରୂପେ ଏଠାରେ ଧ୍ୱନିତ ।

ମାଇକେଲ-ପରିକଳ୍ପିତ ଏ ଦୃଶ୍ୟ ହେଉଛି ଅଦାମ କାନ୍ଦ ପକାଉଛି—

To whom thus Adam of short gay bereft
O pietie and shame that they who to live well
Entered so faire, should turn aside to tread
Paths indirect or in the mud way faint.

ଧର୍ମ ସମରର 'ସାବନ୍ତ' କଳିସୈନ୍ୟମାନଙ୍କ ଦ୍ୱାରା ବନ୍ଦୀ ହେବା ସମୟରେ ଯୁଧିଷ୍ଠିରଙ୍କଠାରେ ଏଭଳି ପ୍ରତକ୍ରିୟା—ଦୁଃଖାନୁଭୂତ ଦେଖାଇ ଦିଆଯାଇଛି—

Digitized by PPRACHIN, SOA

ବିଷର୍ଣ୍ଣେ ଅନ୍ତରେ ତହୁଁ କୌନ୍ତେୟ ସୁମତି
କହିଲେ, "ହେ ଦେବ ବଡ଼ ବିଷମ ଏ କଥା;
ଅଦୃଶ୍ୟ ଏ ଦୃଶ୍ୟ ମୋର । ପବିତ୍ର ଭାରତେ
ବ୍ରାହ୍ମଣର ମନ୍ତ୍ରବଳେ କ୍ଷତ୍ର ବୀର୍ଯ୍ୟବଳେ
ସୁରକ୍ଷିତ ଆର୍ଯ୍ୟଦେଶେ ପଶିବ ଅନୀତି
ଏତେ ଦୂର ? "

ଏହାପରେ ଦୁଃଖ-କାତର ଯୁଧିଷ୍ଠିର ଅଗ୍ନିଙ୍କୁ ଜିଜ୍ଞାସା କରୁଛନ୍ତି—

ବୀରପୂର୍ବପ୍ରସୂ ଆହା ଏ ମହୀକି ଆଉ
ପ୍ରସବିବ ନାହିଁ ଆଉ କୁମର ହେଭଳି ?

ଅଗ୍ନି ଆଶ୍ୱାସନାପ୍ରଦ ଉତ୍ତର ଦେଉଛନ୍ତି ଯେ ବହୁଶତ ବର୍ଷ ଅନ୍ତେ ଧର୍ମବୀରଶ୍ରେଣୀ କାମଜିତ୍ ଭଗବାନ ଶାକ୍ୟସିଂହ, ତତ୍ପରେ ତାଙ୍କର ଶିଷ୍ୟଶିରୋମଣି ମହାତେଜା ନରପତି ଅଶୋକ ଜନ୍ମଲଭ କରି ଦେଶ-ଦେଶାନ୍ତରେ ଧର୍ମାଲୋକ ପରିବ୍ୟାପ୍ତ କରିବେ । ପୁନଶ୍ଚ ଧର୍ମକ୍ଷୟ ହେବ ଏବଂ ତଦ୍‌ଘଟିତ ଅଜ୍ଞାନତମିରରାଶି ନାଶ କରିବେ । ଆଦିତ୍ୟସଙ୍କାଶ ବୀରେନ୍ଦ୍ର ବିକ୍ରମାଦିତ୍ୟ । ସେ କଳଙ୍କିତ ଓ ଅଧଃପତିତ ବୌଦ୍ଧଧର୍ମର ଉଚ୍ଛେଦ କଲେ ହେଁ ପୁନରପି ଭାରତ ଅଜ୍ଞାନ-ତମିରରେ ପ୍ରଚ୍ଛନ୍ନ ହୋଇଯିବ । ଏ ତମିର ଭେଦକରି ଭବିଷ୍ୟତର ଦୂରଦୂରାନ୍ତ ଦୃଶ୍ୟ ପ୍ରଦର୍ଶନ କରିବା ପାଇଁ ଯୁଧିଷ୍ଠିରଙ୍କୁ ସହାନୁଭୂତି ପ୍ରବଣ ଅଗ୍ନି କହୁଛନ୍ତି—

ଦିବ୍ୟାଞ୍ଜନ ଯୋଗେ ତୁମ ଦୃଷ୍ଟିର ପ୍ରସାର
ଦେବେ କାଳେ, ଭବିଦୃଶ୍ୟ ସଂକ୍ଷେପେ ଦେଖାଇ
ଧୂମ୍ରମୂରୁ ମେଲାଣି ଘେନ ଯିବ କୁରୁମଣି !

ସହସା ସହ୍ୟାଦ୍ରିତଟରେ ପ୍ରଜ୍ୱଳିତ ହୋଇ ଉଠିଲା ବହ୍ନିଶିଖା । ତନ୍ମଧ୍ୟରୁ ମହାଦେବୀ ସ୍ୱାହା ହେମ-ଅଳଙ୍କାର ଧାରଣକରି ଆବିର୍ଭୂତା

Digitized by PPRACHIN, SOA

ହେଲେ ଏବଂ ସ୍ୱାମୀ ଅଗ୍ନି ଦେବଙ୍କ ହସ୍ତରେ ତାହା ସମର୍ପଣ କରି ଅନ୍ତର୍ହିତା ହୋଇଗଲେ । ଅଗ୍ନି ଏହି ସମୟରେ ଭସ୍ମମିଶ୍ରଣ କରି ଦିବ୍ୟାଞ୍ଜନ ରଚନା କଲେ ଏବଂ ଯୁଧିଷ୍ଠିରଙ୍କୁ କହିଲେ—

ହେ ବୀର, ଯାବତ ମୋର ଅଧିଷ୍ଠାନ ଏଥି,
ଏ ଅଞ୍ଜନ ଯୋଗେ ତୁମ୍ଭ ଇନ୍ଦ୍ରିୟ ନିକରେ
ପ୍ରସରିବ ଦିବ୍ୟ ଶକ୍ତି, ଦେଖିବ ବସ୍ତୁସ୍ତେ
ଦୃଶ୍ୟାବଳୀ ଏବେ ଯାହା ନର ନେତ୍ରାତୀତ,
ଭିତରର ସତ୍ୟପଟ ଫିଟାଇବ ଆଜି
ଦେଶ କାଳ ବ୍ୟବଧାନ-ଉତ୍ତୋଳନ ପଟୁ ।

ଏ ଦିବ୍ୟାଞ୍ଜନ-ନିଃସୃତ ଦିବ୍ୟଦୃଷ୍ଟିର ଭିତ୍ତି ମିଲ୍‌ଟନଙ୍କ- ପଦ୍ଧତି ସଞ୍ଜୟଙ୍କୁ ବ୍ୟାସ ଦେଇଥିବା ଦିବ୍ୟଦୃଷ୍ଟିର ଆଖ୍ୟାନ ଏଠାରେ ଉପଲକ୍ଷ ରୂପେ ଦିଆଯାଇଛି । ତାହାର ଉଲ୍ଲେଖ କରାଯାଉଛି—

Michael from Adam's eyes the filme removes
And from the well of life three drops instill'd
So deep the power of these ingredients pierc'd
Even to the inmost seat of mental sight.

—Milton

ବସ୍ତୁତଃ, ଅଗ୍ନି ଯୁଧିଷ୍ଠିରଙ୍କୁ ଏହି ଦ୍ୱିତୀୟବାର ଦିବ୍ୟଦୃଷ୍ଟି ଦେଇଥିବା ଯୋଗୁ ମହାଯାତ୍ରାର ଆଗାମୀ ଘଟଣା-ପ୍ରବାହର ଅସଲ ଆରମ୍ଭ ଏଠାରୁ ହେବା କଥା । ଏ ପର୍ଯ୍ୟନ୍ତ ଉପସ୍ଥାପିତ ବିଷୟରୁ କଳି ଓ କଳିସେନାଙ୍କର ସଂଘର୍ଷ ତଥା ପ୍ରାଧାନ୍ୟ ହୋଇ ଆସିଛି, ମହାଯାତ୍ରା ପୂର୍ଣ୍ଣାଙ୍ଗ ହୋଇଥିଲେ ସମ୍ଭବତଃ ତାହା ଅବ୍ୟାହତ ରହିଥାନ୍ତା । ପୁନଶ୍ଚ, ମହାଯାତ୍ରାର ଗଠନ ମହାଭାରତର ମୌଷଳ ଓ ମହାପ୍ରସ୍ଥାନ ପର୍ବର ଭିତ୍ତିରେ ଆରମ୍ଭ ହୋଇଥିଲେ ସୁଦ୍ଧା Faerie Queene ଓ Paradise Lostରୁ, ଏପରିକି

Digitized by PPRACHIN, SOA

ନୈଷଧୀୟ୍ଚରିତର ୧୭ଶ ସର୍ଗରୁ ଉପାଦାନମାନ ତନ୍ମଧ୍ୟରେ ମୁଖ୍ୟ ଭାବରେ ଯୋଗ କରାଯାଇଛି—କଥାବସ୍ତୁ ତଥା ପରିପାଟୀ ସହ୍ଯାରେ । ତଥାପି ଆଲୋଚିତ ଓ ଅନାଲୋଚିତ କାବ୍ୟଦ୍ବୟ କବିଙ୍କର ସମ୍ପର୍କ ଏଥିରେ ନିହିତ ଅଛି । କବି ରାଧାନାଥଙ୍କ କାବ୍ୟ କର୍ମ-କାରିଗରୀର ସଂଶ୍ଳେଷଣ କଳା ପ୍ରତି ଅବହିତ କରାଇବା ଉଦ୍ଦେଶ୍ୟରୁ କେତୋଟି ଉଦାହରଣ ଦିଆଯାଇଛି—

(କ) ଅନନ୍ତ ଜୀବନର ଉତ୍ସରୁ ତିନିବୁନ୍ଦା ଜଳ ସେବନରେ ଯେଉଁବା ପରେ ଆଦାମ୍ ଚକ୍ଷୁ ଦେଖିଲେ—ଏକ ବିପୁଳ ପ୍ରାନ୍ତର, ଭବିଷ୍ୟତ ଘଟିତ ଦୃଶ୍ୟପ୍ରବାହର କ୍ରୀଡ଼ା-ମଞ୍ଚ । ଏ ପଙ୍କ୍ତି ରାଧାନାଥଙ୍କୁ ଅଧିକ ଚମତ୍କାରିତା ପ୍ରକାଶ କରିବାଲାଗି ପ୍ରେରଣା ଦେଇଥିବା ପରି ମନେହୁଏ—

ଫୁଟିଲା ସହସା ଅଗ୍ରେ ଶତଶୃଙ୍ଗ-ଗିରୁ—
ତୋରଣ-ଶୋଭିନୀ ଧ୍ୱଜୀ ପତାକାମାଳିନୀ...

ଏବଂ ଅନ୍ୟତ୍ର ମଧ୍ୟ ଏହି ଦୃଶ୍ୟରୁ କ୍ରିୟା-ପ୍ରବାହର ଆରମ୍ଭ ହୋଇଛି—

... ... ଫିଟିଲା ସହସା

ଇନ୍ଦ୍ରଧନୁ-ତୋର-ଧ୍ୱଜୀ-ତୋରଣ, ଅଗ୍ରତେ
ବଜ୍ରନାଦେ ସିଂହନାଦେ କମ୍ପାଇ ମେଦିନୀ
ବାହାରିଲେ ଦଳେ ଦଳେ ସେ ତୋରଣ ମୁଖୁ
ଅସଂଖ୍ୟ ପଦାତି, ସାଦୀ, ଆଧୋରଣ ରଥୀ···

ପୂର୍ବାଭିଯାନରେ ଏ ପ୍ରକାର ସାଧାରଣ ବର୍ଣ୍ଣନାର ଦ୍ରଷ୍ଟା ବୋଲି (?) ମାଇକେଲ ମଧୁସୂଦନଙ୍କୁ କୁହାଯାଇପାରେ—

ଖୁଲିଲ ପଶ୍ଚିମଦ୍ୱାର, ଅଶନି-ନିନାଦେ
ବାହାରିଲ ଲକ୍ଷ ରକ୍ଷଃ ସ୍ୱର୍ଣ୍ଣ ଦଣ୍ଡକରେ
କୌଶିକ ପତାକା ତାହେ ଉଡ଼ୁଛେ ଆକାଶେ

.. ... ...

Digitized by PPRACHIN, SOA

ପଦବ୍ରଜେ ପଦାତିକ, କାତାରେ କାତାରେ
ବାଜି ରାଜି ସନ୍ଦ ଗଜ, ରଥୀବୃନ୍ଦ ରଥେ
ମୃଦୁଗତି ... (ମେଘନାଦ ବଧ)

ଏଠାରେ ଉଲ୍ଲେଖ କରିବା ଉଚିତ ଯେ ରାଧାନାଥ ଓ ମଧୁସୂଦନ ଉଭୟେ ମିଲ୍‌ଟନଙ୍କର ଭକ୍ତ ଗ୍ରାହକ । ମଧୁସୂଦନଙ୍କର ମେଘନାଦ ବଧର ନମସ୍କ୍ରିୟା ମଧ୍ୟ ମିଲ୍‌ଟନୀୟ ପ୍ରେରଣାପ୍ରସୂତ । ତେବେ ଏ ଉଭୟଙ୍କ ଯୁଦ୍ଧ-ପ୍ରସ୍ତୁତି ବର୍ଣ୍ଣନା ଅପେକ୍ଷା ବ୍ରଜନାଥ ବଡ଼ଜେନାଙ୍କର ଅନୁରୂପ ବର୍ଣ୍ଣନା- ଯାର ଫଉଜ ହେଲେ ତୟାର, ମୁହଁଦ ମୂହା ହେଲେ ବାହାର, ଘାଗାପୁଅର କି ଜମାଦାର କି ସରଦାର ଯେ—ଠାରୁ ଆରମ୍ଭ କରି ସମରତରଙ୍ଗର ଯାର ଦ୍ୱିତୀୟ ଛାନ୍ଦଟି ପ୍ରତ୍ୟକ୍ଷ-ଜୀବନ୍ତ, ନାଟକୀୟ ଏବଂ ଚମତ୍କାର । ଅପରନ୍ତୁ ପାହାଡ଼ିଆ କେଦାର ବୃତ୍ତ, ଅମିତ୍ରାକ୍ଷର ଛନ୍ଦ ଅପେକ୍ଷା ବର୍ଣ୍ଣନୀୟ ବ୍ୟାପାରକୁ ଅଧିକ ଗତିଶୀଳ ଏବଂ ଜୀବନ୍ତ କରିପାରିଛି ।

(ଖ) ମହାଭାରତର ମହାପ୍ରସ୍ଥାନ ପର୍ବ ମହାଯାତ୍ରାର କଥାବସ୍ତୁ ଏବଂ ତାହା ଯୁଧିଷ୍ଠିର-ସୂତ୍ରରେ ଏ କଥାବସ୍ତୁର ଆଦ୍ୟନ୍ତ ପରିବ୍ୟାପ୍ତ ହେଲେହେଁ ଅନ୍ୟାନ୍ୟ ପର୍ବରୁ ବ୍ୟାସୋକ୍ତ ଭାବଖଣ୍ଡମାନ ରାଧାନାଥ ନିଜ କାବ୍ୟର ଯଥା-ସ୍ଥାନରେ ବିନ୍ୟାସ କରିଛନ୍ତି; ଯଥା—

ପଞ୍ଚପଡ଼ା ନିମନ୍ତେ ଆଗତମଧ୍ୟସ୍ଥ କେଶବଙ୍କୁ ଦୁର୍ଯ୍ୟୋଧନଙ୍କ ଚରମ-ବାକ୍ୟ—ସୂଚ୍ୟଗ୍ରେ ସୁତୀକ୍ଷ୍ଣେନ ଯାବଦ୍ଧିଷ୍ୟତି ମେଦିନୀ

ତାବଦ୍‌ଭୂମିନ୍ ଦାତବ୍ୟା ବିନା ଯୁଦ୍ଧେନ କେଶବ !—

ମହାଯାତ୍ରାର—ବିନା ଯୁଦ୍ଧେ ନ ଦେବାର ସୂଚ୍ୟଗ୍ର ମେଦିନୀ
ପଣ ଯେଉଁ ଆର୍ଯ୍ୟଙ୍କର ତାଙ୍କର ଶୋଣିତ ··
ଉରୁରେ ଫଳିତ ।

ପୁନଶ୍ଚ, ଦୁର୍ଯ୍ୟୋଧନଙ୍କ ଦ୍ରୋହଯାତ୍ରାକାଳୀନ ପରିଣାମରେ ତାଙ୍କୁ ସାହାଯ୍ୟ ଦେବା ପ୍ରସଙ୍ଗରେ ଭୀମଙ୍କୁ ବୁଝାଇବା ନିମନ୍ତେ ଯୁଧିଷ୍ଠିରଙ୍କ ଉକ୍ତି—

Digitized by PPRACHIN, SOA

ପରସ୍ପର-ବିରୋଧେ ହି ବୟଂ ପଞ୍ଚ ଚ ତେ ଶତମ୍
ଅନ୍ୟୈଃ ସହ ବିରୋଧେ ତୁ ବୟଂ ପଞ୍ଚୋତ୍ତରଶତମ—

ମହାଯାତ୍ରାରେ ସେହି ଯୁଧିଷ୍ଠିରଙ୍କ ମୁଖରେ ବିସ୍ମୟ ଏବଂ ଦୁଃଖ ସହକାରେ ମଧ୍ୟ ପ୍ରକଟିତ—

ଶତଭ୍ରାତା କୁରୁ ପଞ୍ଚପାଣ୍ଡବ ସହିତେ
ଥିଲେହେଁ ବିବାଦେ ରତ, ଦେଶବୈରୀ ସହ
ଯୁଝିଥିଲୁ ଆମ୍ଭେ ହୋଇ ପଞ୍ଚୋତ୍ତରଶତ ।

(ଗ) ଶ୍ରୀହର୍ଷଙ୍କ ନୈଷଧୀୟଚରିତ- ବର୍ଣ୍ଣିତ କଳିସେନାପତି 'ମୋହ' ସମ୍ପର୍କରେ ଉକ୍ତି—

ଜାଗ୍ରତାମପି ନିଦ୍ରା ଯଃ ପଶ୍ୟତାମପି ଯୋଽନ୍ଧତା
ଶ୍ରୁତେ ସତ୍ୟପି ଜାଡ୍ୟଂ ଯଃ ପ୍ରକାଶେଽପି ଚ ଯସ୍ତମଃ···

ମହାଯାତ୍ରା ଅନୁବାଦ ପ୍ରାୟ ମୁଦ୍ରିତ ହୋଇଛି—

ଶାସ୍ତ୍ରଜ୍ଞାନ ହିତେ ଜଡ଼, ଅନ୍ଧ ଚକ୍ଷୁ ଥାଇ,
ହେଲେହେଁ ଜାଗ୍ରତ ଗାଢ଼-ନିଦ୍ରା-ଅଭିଭୂତ
ଦିବାନ୍ତି ହିଅନ୍ତି ଆହା ମହାଘୋରତମେ
ଧୀପଦହନ୍ତେ···।

ଈର୍ଷା ସମ୍ପର୍କରେ ଶ୍ରୀହର୍ଷଙ୍କ ଚିନ୍ତଣକୁ ଭୂରିପୁର ପରିହାର କରିଥିଲେ ବି ତାଙ୍କର "ଲୋଭ"-ସ୍ୱରୂପ ଚିନ୍ତଣକୁ ରାଧାନାଥ ନିଜ କାବ୍ୟରେ 'ଲୋଭ' ସଦା ପ୍ରସାରିତ ପାଣି ଭିକ୍ଷା ଲାଗି"—ଠାରୁ ତୁଚ୍ଛ ଧନ ବାନ୍ଧମୟେ" ପର୍ଯ୍ୟନ୍ତ ଉକ୍ତିରେ ଭୂରିଭୂରି ସ୍ୱୀକାର କରିଛନ୍ତି । ଏହାର ସଂସ୍କୃତାଦର୍ଶ ହେଉଛି—

ହସ୍ତୌ ବିସ୍ତାରୟନ୍ନିତେ ଶାର୍ଭ୍ୟଂଦର୍ଥପଥଚ୍ଛଦାକ୍ ।
ସୂଚୟନ୍ନକାକ୍ଷମାକୁଡ଼ୈର୍ଲୋଭସ୍ତନ ବ୍ୟଲୋକ୍ଷ ତୈଃ ॥

Digitized by PPRACHIN, SOA

ଦୈତ୍ୟେନ୍ଦ୍ରୈର୍ନ୍ୟମସ୍ୟା ନତ୍ୟମତ୍ୟାହ୍ରାତ୍ମେସ୍ୟାତ୍ବିନଃ ।
ଭ୍ରାନ୍ତାନନନଯାକୃତପଣ୍ୟା ଯସ୍ୟାନୁଜୀବିନଃ ।।
ଧନ୍ଦାନାଂବୃବୃନ୍ଦୈର୍ଯୈଃ ପାତ୍ରପାଣୀବବଗ୍ରହଃ ।
ସ୍ଵାନ୍ଦାହାନବ ହ୍ରା ନଃସ୍ଵାଦ୍ ବିକୀର୍ଣୋତେଽର୍ଥବସ୍ତ୍ରୁ ଯଃ ।।

(ଗ) ମହାସ୍ଥାନ୍ତାର ସାତକୋଶିଆ ଗଣ୍ଡଶୈଳ ନିକଟ ବନବର୍ଣ୍ଣନାର '... ବନଗଜବ୍ରଜ-/କଣ୍ଡୂକ-କପୋଳ-ଘଣ୍ଡ-ଘର୍ଷଣ କମ୍ପିତ/ଦ୍ରୁମାବଳି ଦେଖୁଁ ଯହିଁ ଝରଇ ପ୍ରବାହେ/ସୁରଭି' ଏବଂ '... ଭିନ୍ନାଞ୍ଜନପ୍ରଭ-/ତମିରେ ଆଚ୍ଛନ୍ନ ମହା ଘୋର ଶୈଳଖୋଲେ' ଭଳି ପ୍ରତିବିମ୍ବିତ ଶ୍ଳୋକ୍ୟାର ଆଦର୍ଶ ଯଥାକ୍ରମେ ହେଉଛି—କୁମାର ସମ୍ଭବର 'କପୋଳକଣ୍ଡୂଃ କରିଭିର୍ବିନେତୁଂ ବିଘଟ୍ଟିତାନାଂ ସରଳଦ୍ରୁମାଣାମ୍/ଯତ୍ର ସ୍ରୁତକ୍ଷୀରତୟା ପ୍ରସୂତଃ ସାନୂନି ଗନ୍ଧଃ ସୁରଭୀକରୋତି' ଓ ଦିବାକରାଦ୍ରକ୍ଷତି ଯୋ ଗୁହାସୁ ଲୀନଂ ଦିବାଭୀତମିବାନ୍ଧକାରମ୍ ।'

ଏଭଳି ଅନ୍ୟାନ୍ୟ ଭାବଗ୍ରହଣର ଯୋଗସୂତ୍ର ମଧ୍ୟ କାଳିଦାସ, ବାଣଭଟ୍ଟ, ମାଘ ପ୍ରମୁଖ ସଂସ୍କୃତ କବି ଓ ରାଧାନାଥଙ୍କ ମଧ୍ୟରେ ବାରହେବ ।

(ଙ) ବେଳେ ବେଳେ ରାଧାନାଥ ଗୋଟିଏ-ଦୁଇଟି ଶବ୍ଦରେ ଅନ୍ୟ ଏକ ଆଲେଖ୍ୟ ବା ଆଖ୍ୟାନର ଚମତ୍କାରିତା ସ୍ମୃତିଫଳକରେ ଉଜ୍ଜୀବିତ କରନ୍ତି । ପୃଥ୍ୱୀଙ୍କର ଯଶୋଗାଥା ଶୁଣି ଶୁଣି ସଂଯୁକ୍ତା, ପିତାଙ୍କ ବିରୋଧଭାବ ସତ୍ତ୍ୱେ, ତାଙ୍କ ପ୍ରତି ଅନୁରାଗିଣୀ ହୁଅନ୍ତି । ତାଙ୍କର ସ୍ୱୟମ୍ବର ଉପଲକ୍ଷରେ ଉପସ୍ଥିତ ବହୁ ରାଜାଙ୍କ ସମ୍ମୁଖରେ ମଧ୍ୟ ଅତୁଳନୀୟ ପ୍ରେମ ଓ ସାହସ ପୂର୍ବକ ପୃଥ୍ୱୀ ପ୍ରତିମୂର୍ତ୍ତିରେ ବରଣମାଳା ଦାନ କରନ୍ତି । ପୃଥ୍ୱୀ ଏପରି ଘଟଣା ସମ୍ଭାବନା କରି ଛଦ୍ମବେଶୀ ସୈନ୍ୟଙ୍କ ସହିତ ପୂର୍ବରୁ ସେଠାରେ ଉପସ୍ଥିତ ଥାଇ—

ଚମେକେ ଜଳକା ପ୍ରାନ୍ତେ ରାଜାଙ୍କ ସମ୍ମୁଖେ
ଉଲ୍କା ବେଗେ ଆସି ବୀର୍ଯ୍ୟଶୁଳ୍କା ରୂପସୀକି
ଅନୁକୂଳ ବଳାତ୍କାରେ ନେଇଯିବେ ହରି
ସଭାତଳୁ,... ।

Digitized by PPRACHIN, SOA

ଏଠାରେ ବିଶେଷତଃ 'ବୀର୍ଯ୍ୟଶୁଳକା' ତଥା (ପ୍ରସହ୍ୟ ସ୍ଥଳରେ) 'ଅନୁକୂଳ ବଳାତ୍କାରେ' ପଦମାନ ରୁକ୍ମଣୀ ବିବାହକାଳୀନ ଅବସ୍ଥାର ମଧୁର ସ୍ମୃତିସଙ୍କେତ ବହିଛିଏ । କୃଷ୍ଣଙ୍କ ନିକଟକୁ ବ୍ରାହ୍ମଣଦୂତ-ହସ୍ତରେ ତାଙ୍କ ପ୍ରତି ନିଜ ପ୍ରେମଗାଥା ନିବେଦନ କରି ମର୍ଯ୍ୟାଦା ରକ୍ଷା ଦୃଷ୍ଟିରୁ ଯେଉଁ ବାର୍ତ୍ତା ଦେଇଥିଲେ, ସେଇ—'ଶ୍ରୁତ୍ୱା ଗୁଣାନ୍ ଭୁବନସୁନ୍ଦର ଶୃଣ୍ୱତାଂ ତେ ନିର୍ବିଶ୍ୟ କର୍ଣ୍ଣବିବରୈର୍ହରତୋଽଙ୍ଗତାପମ୍' ଠାରୁ 'ଯର୍ହ୍ୟମ୍ବୁଜାକ୍ଷ ନ ଲଭେୟ ଭବତ୍ପ୍ରସାଦଂ ଜହ୍ୟାମସୂନ୍ ବ୍ରତକୃଶାଞ୍ଛତ ଜନ୍ମଭିଃ ସ୍ୟାତ୍' ୫୨ତମ ଅଧ୍ୟାୟ—(ଭାଗବତ) ପର୍ଯ୍ୟନ୍ତ ଭାବଦୃଷ୍ଟିରୁ ଦୃଷ୍ଟିରୁ ପଠନୀୟ । ତନ୍ମଧ୍ୟରେ ରୁକ୍ମିଣୀଙ୍କର ସର୍ତ୍ତ ଥିଲା ବାଗ୍‌ଦାନର ସର୍ତ୍ତ,—କୃଷ୍ଣ ବୀର୍ଯ୍ୟ ବା ବୀରତ୍ୱ ପ୍ରଦର୍ଶନ ପୂର୍ବକ ତାଙ୍କୁ ଶିଶୁପାଳ, ଶାଲ୍ୱ, ଜରାସନ୍ଧ ପ୍ରମୁଖ ମହାବୀରମାନଙ୍କ ସୈନ୍ୟ-ପରିବେଷ୍ଟନୀ ମଧ୍ୟରୁ ବଳାତ୍କାରରେ ହରଣକରି ରାକ୍ଷସୀୟ ବିବାହ କରିବେ,—ସେ ଗୈରଙ୍କ ପରି ହରଣ କରିବେ ନାହିଁ । ରାଧାନାଥଙ୍କ ପ୍ରେରଣା-ଉତ୍ସ ସ୍ୱରୂପ ଭାଗବତୋକ୍ତ ଶ୍ଳୋକଟିର ଉଲ୍ଲେଖ ବିବେଚନା ଦୃଷ୍ଟିରୁ ଯଥେଷ୍ଟ—

ଶ୍ୱୋଭାବିନି ତ୍ୱମଜିତୋଦ୍‌ବହନେ ବିଦର୍ଭାନ୍
ଗୁପ୍ତଃ ସମେତ୍ୟ ପୃତନାପତିଭିଃ ପରୀତଃ ।
ନିର୍ମଥ୍ୟ ଚୈଦ୍ୟମଗଧେନ୍ଦ୍ର ବଳଂ ପ୍ରସହ୍ୟ
ମାଂ ରାକ୍ଷସେନ ବିଧିନୋଦ୍‌ବହ ବୀର୍ଯ୍ୟଶୁଲ୍‌କାମ୍ ॥

ସଂଯୁକ୍ତା ଓ ପୃଥ୍ୱୀ ବ୍ୟାପାର ଇତିହାସ ଦ୍ୱାରା ସମର୍ଥିତ ହେବା ସତ୍ତ୍ୱେ ରୁକ୍ମଣୀ ଓ କୃଷ୍ଣଙ୍କର ପ୍ରାସଙ୍ଗିକ ରୂପାନ୍ତର, ଅଧିକନ୍ତୁ Faerie Queenerେ ଜଣେ ଜଣେ ନାଇଟ୍—ଯୋଦ୍ଧା ।

(ଚ) ହେତୁପରି ମହାଯାତ୍ରାର ଅମର୍ଷୀଙ୍କ ଉକ୍ତି—ଭୀରୁତା ଯେ ହେତୁ ସିନା ବାରବାର ମରଣ / ଭୀରୁଭାବ ବିନା ତୁମ୍ଭେ ମୃତ ଏ ଜଗତେ—ସେକ୍‌ସ୍‌ପିଅର୍‌ଙ୍କ ଜୁଲିଅସ୍ ସିଜର୍ ନାଟକର Cowards die many times before their deaths. (The valiant never taste of

Digitized by PPRACHIN, SOA

death but once)ର ପ୍ରତିଧ୍ୱନି, ଯଦିଓ ସଂସ୍କୃତ ସାହିତ୍ୟରେ ମଧ୍ୟ ଏ ପ୍ରକାର ଉକ୍ତିମାନ ରହିଛି ।

(ଛ) ବାଇବେଲର ଜେନେସିସ୍‌ରୁ—For dust thou art, and unto dust shalt thou return ବାକ୍ୟଟି ମିଲଟନ୍‌ଙ୍କ ପାର୍‌ଡାଇଜ୍ ଲଷ୍ଟରେ ହୋଇଛି—For dust thou art and shalt to dust return, ପ୍ରାୟ ଅବିକଳ, କବି ଲଙ୍ଗ୍‌ଫେଲୋଙ୍କ A psalm of lifeରେ ହୋଇଛି—Life is real ! Life is earnest !/ And the grave is not its goal. / Dust thou art, to dust returnest. / Was not spoken of the soul. ଏ ତାରତମ୍ୟ ବିଚାର କଲେ ଲଙ୍ଗ୍‌ଫେଲୋଙ୍କୁ ଅଧିକ ମୂଲ୍ୟ ଦେଇହେବ । ଯେହେତୁ ଜେନେସିସ୍‌ର ଉକ୍ତିକୁ ସେ ସ୍ୱୀକରଣ ସୂତ୍ରରେ ଆପଣା-ଭଳି କରିପାରିଛନ୍ତି । ରାଧାନାଥ ଏ କ୍ଷେତ୍ରରେ ଲେଖିଛନ୍ତି --

ଏ ଜୀବ ନୁହଇ ସ୍ଥିର, ସ୍ଥିରଟି ମରଣ,<br>ମାଟିର ଏ ଘଟ ନଷ୍ଟେ ମିଶିବ ମାଟିରେ .. ।

ରାଧାନାଥ (ଧୂଳି ସ୍ଥାନରେ) ମାଟି ଏବଂ ଘଟ ଶବ୍ଦର ପ୍ରୟୋଗ କରିଥିବା ଦୃଷ୍ଟିରୁ ତାହିଁରେ ଅପ୍ରତ୍ୟକ୍ଷ ଭାବରେ ଓଡ଼ିଶା ଭଜନର 'ମାଟି-ଘଟପଞ୍ଜୁରିକି ସୁବର୍ଣ୍ଣର ଶୁଆର'—ପଦର ଧ୍ୱନି ଇଙ୍ଗିତ । ପୁନଶ୍ଚ, ମୂଳ ମହା-ଭାରତର ଏ ପ୍ରସଙ୍ଗରେ କାଳର କତ୍ରିଭୂମହିମା ପରିପ୍ରେକ୍ଷୀ ରୂପେ ବିବେଚିତ ।

(ଜ) ମିଲଟନ୍‌ଙ୍କ Awake, arise, or be for ever fall'n (Book-1) ଭଳି ରାଧାନାଥୋକ୍ତ ମନ୍ତ୍ରର ସାଧନ ଅବା ଶରୀର-ପାତନ ମନେହେଲେ ହେଁ, ତାହା -- ମନ୍ତ୍ରଂ ବା ସାଧୟେଦ ବା ଶରୀରଂ ବା ପାତୟେତ୍—ପ୍ରବଚନର ରୂପାନ୍ତର ମାତ୍ର ।

ଏହିପରି ବହୁ ପ୍ରତ୍ୟକ୍ଷ ଓ ଅପ୍ରତ୍ୟକ୍ଷ ଭାବ ଯୋଗାଯୋଗର ସନ୍ଧାନ କରିଯାଇପାରେ । ଏଣୁ, ଏପରି ଧରିନେବା ଉଚିତ ନୁହେଁ ଯେ ରାଧାନାଥ

Digitized by PPRACHIN, SOA

କେବଳ କାବ୍ୟ ରାଜ୍ୟରେ କୁମ୍ଭୀଲକତା (plagiarism) ଆଚରଣ କରିଛନ୍ତି । ଭର୍ଜିଲ୍, ସେକ୍ସପିଅର, ସ୍ପେନ୍ସର, କାଳିଦାସ, ରବୀନ୍ଦ୍ରନାଥ, ମାଇକେଲ୍ ମଧୁସୂଦନ, ଅଭିମନ୍ୟୁ ପ୍ରମୁଖ ବହୁ କବିଙ୍କ ପକ୍ଷରେ ଏଇ 'ନେଇ ଆଣି ଯୋଇ ଜାଣିଲେ ଚୋରି ବିଦ୍ୟାଟି ଭଲ' ପ୍ରବଚନ ସାର୍ଥକ ହୋଇଛି । ଏ ପ୍ରବନ୍ଧରେ ଏକତମ କବିଗୁରୁ ଭାବରେ ପ୍ରତିଭାତ ହେଉଥିବା ମିଲ୍ଟନଙ୍କ ସମ୍ପର୍କରେ କୁହାଯାଇଥାଏ ଯେ କାବ୍ୟ ରାଜ୍ୟରେ ସେ ସର୍ବୋତ୍ତମ କୁମ୍ଭୀଲକ (greatest plagiarist), ଅସଲ ସତ ହେଉଛି—କୌଣସି କବି ସମ୍ପୂର୍ଣ୍ଣ ମୌଳିକ ନୁହେଁ । ରାଧାନାଥ ମଧ୍ୟ ତହିଁରୁ ବହିର୍ଭୂତ ନୁହନ୍ତି । ଅନୁକରଣ ଜନ୍ମା କେବଳ ଅନୁସରଣ ନ କରି ଯେଉଁ ବହୁପାଠୀ କବି ବିଭିନ୍ନ ସାରସ୍ୱତ ସୁମନଙ୍କ ସୁରସ-ଆହରଣମାନ କରି ସ୍ୱୀକରଣ ସୂତ୍ରରେ ତାହା ମଧୁକୋଷତୁଲ୍ୟ ଆପଣା ବ୍ୟକ୍ତିତ୍ୱରେ ଏକାକାର କରିପାରେ—ସେ ମଧ୍ୟ ମୌଳିକ । କବି ହେଉଛି ଋତୁରାଜ ବସନ୍ତ ପରି । ଶୀତକାଳରେ ନିଷ୍ପତ୍ର ତରୁରାଜି ବସନ୍ତର କୁହୁକ ସ୍ପର୍ଶରେ ନବପଲ୍ଲବିତ ଓ କୁସୁମିତ ହୋଇ ଅପୂର୍ବ ଶୋଭା ଧାରଣ କରେ;—ତାର ପ୍ରାକ୍ତନ ଅଶୋଭନ ପ୍ରଚ୍ଛନ୍ନ ବିସ୍ମୃତ ହୋଇଯାଏ । ବସନ୍ତ ପ୍ରତିଭାତ କରେ ତା'ର ନୂତନ ଶୋଭାର ମଣ୍ଡନ ଏବଂ ଐଶ୍ୱର୍ଯ୍ୟ । ମୌଳିକତାର ଏଇ ଦିଗ୍ଭ୍ରାନ୍ତ ଦିଅନ୍ତି ଆନନ୍ଦବର୍ଦ୍ଧନ—

ଦୃଷ୍ଟପୂର୍ବା ଅପି ହ୍ୟର୍ଥାଃ କାବ୍ୟେ ରସପରିଗ୍ରହାତ୍
ସର୍ବେ ନବା ଇବାଭାନ୍ତି ମଧୁମାସ ଇବ ଦ୍ରୁମାଃ ।

କବି-ସମାଲୋଚକ ଏଲିଅଟ୍ ଏଇ ମୌଳିକତା ସମ୍ପର୍କରେ ଅନୁରୂପ ମତଦିଅନ୍ତି—No author can claim himself to be absolutely original. The past tradition and present development are bound to influence him when he sits down to write.

ପାସ୍କାଲ୍ଙ୍କର ଗୋଟିଏ ଉକ୍ତି ଏ ସମ୍ପର୍କରେ ମଧ୍ୟ ମନେପଡ଼େ—The more intelligence one has the more people one finds original (Pensees). ସାଧାରଣ ଲୋକଙ୍କ ପକ୍ଷରେ ପାରସ୍ପରିକ ତାରତମ୍ୟ

Digitized by PPRACHIN, SOA

ବସ୍ତୁରରୁ ଏ ମନ୍ତବ୍ୟ ଯାହା, କବିମାନଙ୍କ ପକ୍ଷରେ ନିଜ ନିଜ ସ୍ୱତନ୍ତ୍ର-ନିର୍ଦ୍ଦିଷ୍ଟ ଦୃଷ୍ଟିରୁ ମଧ୍ୟ ତାହା । କବିଙ୍କର ସ୍ୱୀକରଣ ତା ନିଜସ୍ୱ ଧରଣି ନିରୂପଣ କରି-ପାରିଲେ ତାଙ୍କର ସ୍ୱକୀୟ ମର୍ଯ୍ୟାଦାକୁ ସ୍ୱୀକାର କରିହେବ । କାବ୍ୟର ଯଥା-ସ୍ଥାନରେ ବିବିଧ ଆହରଣର ବିନିଯୋଗ ଓ ବିନ୍ୟାସ, ବିଦେଶୀ ଉପାଦାନ ସ୍ୱଦେଶୀକରଣ,—ସର୍ବୋପରି ଶୈଳୀ ବିଶ୍ୱାସଯୋଗ୍ୟତା—ଏ ସମସ୍ତର ସଂଶ୍ଳେଷଣରେ ରାଧାନାଥ ନିପୁଣ କଳାକାର, ଶିଳ୍ପୀ କବି ।

ସାଧାରଣତଃ ସମାଲୋଚକମାନେ ତାଙ୍କୁ ମୁଖ୍ୟତଃ ମିଲ୍ଟନଙ୍କ ଅନୁସାରୀ ବୋଲି କହନ୍ତି; ଯେହେତୁ ମିଲ୍ଟନଙ୍କ ପରି ସେ ଭବିଷ୍ୟତ ବଂଶଧରଙ୍କ ମହାନ୍ ଯାତ୍ରାପ୍ରବାହର ବର୍ଣ୍ଣନା ପ୍ରୟାସ କରିଛନ୍ତି । ମିଲ୍ଟନ୍ ମଧ୍ୟ ଏହା କରିବାକୁ ଯାଇ ହିବ୍ରୁ ପୁରାବୃତ୍ତ (myth)ରେ ବର୍ଣ୍ଣିତ ଆପ୍ରଳୟ (until Deluge) ମହାଯାତ୍ରା ବା ସୁଦୀର୍ଘ ଯାତ୍ରାକୁ ନିଜ ମହାକାବ୍ୟର ବିଷୟ ଭାବରେ ଘେନି ବାଇବେଲ୍‌ର ଜେନେସିସ୍‌ରେ ଅଙ୍କିତ ହେବ ଚିତ୍ରକୁ ଉପସ୍ଥାପନ କରିଛନ୍ତି । ହିବ୍ରୁ ପୁରାବୃତ୍ତରେ ବିଦ୍ରୋହୀ ତଥା ଦ୍ରୋହୀ ସାମୁଏଲଙ୍କୁ ଈଶ୍ୱର କହନ୍ତି—

"O evil Samuel, are you astonished at Adam's wisdom? Yet he will now foresee the birth of his descendants and give everyone his own name, until the last days! (Hebrew Myth, by Robert Graves and Raphael Patai)

ସେଇ ମହାଯାତ୍ରା କଥା । ପୁନଶ୍ଚ, ମିଲ୍ଟନ ମହାକାବ୍ୟ ରଚନାରେ ତାଙ୍କର ଏକତମ ଦିଗଦ୍ରଷ୍ଟା କବିର କବି poets poet ଏବଂ ଏପିକ୍‌ର କବି ରୂପେ ଖ୍ୟାତ ସ୍ପେନ୍‌ସରଙ୍କୁ ପ୍ରୟୋଜନ ସ୍ଥଳରେ ଗ୍ରହଣ କରି, ଯଥାସ୍ଥାନରୁ ବିଦାୟ ଦେଇଛନ୍ତି । କାରଣ ବିଭିନ୍ନ ଅଯୋଗ୍ୟ ଯୋଦ୍ଧାଙ୍କ ନେତୃତ୍ୱରେ ବିବିଧ ଅଭିଯାନର ଯେଉଁ ଚିତ୍ରମାନର ସ୍ପେନସର ଅଙ୍କନ କରିଛନ୍ତି, ମିଲ୍ଟନ-ପରିକଳ୍ପିତ ସୁଦୀର୍ଘ ପତନମୟ ଯାତ୍ରାପଥରେ ତାହାର ଉପଯୋଗ-ସୁଯୋଗ

Digitized by PPRACHIN, SOA

ଥିଲା ସୀମିତ । ଏ କ୍ଷେତ୍ରରେ ରାଧାନାଥଙ୍କର ସ୍ୱାତନ୍ତ୍ର୍ୟ ରହିଛି । ଯୁଧିଷ୍ଠିର ପ୍ରମୁଖ ପାଣ୍ଡବଙ୍କ ମହାପ୍ରସ୍ଥାନରୁ ତଥା ମିଲ୍‌ଟନୀୟ ଆଦାମ୍‌ର ଭବିଷ୍ୟତ ବଂଶଧର-ପ୍ରବାହର ସୁଦୀର୍ଘ ଯାତ୍ରା ଦର୍ଶନରୁ ସେ ନିଜ ମହାକାବ୍ୟର ନାମକରଣ କରିଛନ୍ତି - ମହାଯାତ୍ରା (The Great journey) ଏବଂ ତତ୍‌ସହିତ ଯୁଧିଷ୍ଠିରାଦିଙ୍କର ବ୍ୟାସବର୍ଣ୍ଣିତ ଶ୍ୱାନ-ମାର୍କା ଦେଶୀ ମହାପ୍ରସ୍ଥାନ ବି ଏଥିରେ ଗର୍ଭିତ ।

ଯେଉଁ ପାଟ୍‌ଡାଇଜ୍ ଲଷ୍ଟ୍‌ରେ ଆଦାମ୍ ନିଜ ଅପରାଧ ଫଳରୁ ନିଜର ପତନ ସହିତ, ଭବିଷ୍ୟତ ବଂଶଧରଙ୍କ ଦୂରଦୂରାନ୍ତବ୍ୟାପୀ ଅଧଃପତନର ଯେଉଁ ଦୃଶ୍ୟ ଦେଖିଛି, ସେହି ମହାକାବ୍ୟରୁ ପ୍ରେରଣା ଲାଭକରି କିଟ୍‌ସ୍ ମଧ୍ୟ ଲେଖିଲେ ହାଇପେରିଅନ (Hyperion) ଏବଂ ତହିଁରେ ଅଙ୍କନ କଲେ ହାଇପେରିଅନଙ୍କ ପତନ ଚିତ୍ର । ସେହି ମହାକାବ୍ୟରୁ କିଟ୍‌ସ୍‌ଙ୍କ ପରି ରାଧାନାଥ ପ୍ରେରଣା ପାଇଥିଲେ ସତ୍ୟ, ମନେହୁଏ—ପତନ ବା Fallର ମୂଳସୂତ୍ରଟି ପାଇଥିଲେ ମହାଭାରତର ମୌଷଳ-ପର୍ବରୁ । —ପାଣ୍ଡବମାନଙ୍କୁ ଯେଉଁ ମହାପୁରୁଷ କୃଷ୍ଣ ନିଜ କୃପାତରଣୀରେ ଭୀଷ୍ମଦ୍ରୋଣକର୍ଣ୍ଣାଦି ମହାମହା ବିପଦ-ସମାକୁଳ କୁରୁକ୍ଷେତ୍ର-ସମୁଦ୍ରରେ ପାରିକରି ନେଇଥିଲେ ତାଙ୍କର ତିରୋଧାନ, ପଶ୍ଚାନ୍ତରେ ପତନ ହୁଅନ୍ତେ ପ୍ରଥମେ ବ୍ୟାସ ଅର୍ଜୁନଙ୍କୁ କହିଲେ—

ଏବଂ ବୁଦ୍ଧିଶ୍ଚ ତେଜଶ୍ଚ ପ୍ରତିପତ୍ତିଶ୍ଚ ଭାରତ !
ଭବନ୍ତି ଭବକାଲେଷୁ ବିପଦ୍ୟନ୍ତେ ବିପର୍ଯ୍ୟୟେ ।

ଏଠାରେ ଗ୍ରୀସୀୟ ଟ୍ରାଜେଡି ନାୟକର ପତନଚିତ୍ର ମନେପଡ଼େ । ମାତ୍ର ପତନର ଏଇ ଶ୍ଳୋକୋକ୍ତ ଚିରନ୍ତନ ଭାବ ଭଗବାନ କୃଷ୍ଣ-ଜର୍ଜର ହୋଇ ଯୁଧିଷ୍ଠିର ପ୍ରମୁଖଙ୍କୁ ଅସହାୟଚେତା, ବନ୍ଧୁହୀନ, ଶୋକମଗ୍ନ ତଥା ବିଷୟବିରାଗୀ କରିଦେଇଛି—ଅର୍ଜୁନଙ୍କଠାରୁ ଦୁଃସମ୍ବାଦ ପାଇବା ପରେ । ସେ ମହାପ୍ରସ୍ଥାନର ଉଦ୍‌ଯୋଗ କରନ୍ତେ, ପତନର ସେହି ଚିରନ୍ତନ ଭାବ ରାଧାନାଥଙ୍କ ବିଦୂଷୀ ଏବଂ ଶିଳ୍ପୀ ଚେତନାକୁ ଉଦ୍‌ବୁଦ୍ଧ କରିଥିବା ସମ୍ଭବ ବୋଲି,

Digitized by PPRACHIN, SOA

ଆଦାମ ଦେଖିଥିବା ମାନବଜାତିର ମହାଯାତ୍ରା ସହିତ ଯୁଧିଷ୍ଠିରଙ୍କ ମହାପ୍ରସ୍ଥାନ ମଧ୍ୟ ସଶ୍ଳେଷିତ ହୋଇଯାଇଥିବା ସମ୍ଭବ ।

ଏତେବଡ଼ ମହାଯାତ୍ରାର କଥା (Saga of the Great Journey) ଅଙ୍କିତ କରିବା ପାଇଁ ରାଧାନାଥ ଯେଉଁ ବିପୁଳାକୃତିର କ୍ୟାନ୍‌ଭାସ୍ ବା ପରଦାର ବ୍ୟବହାର କରିଛନ୍ତି ତାର ପ୍ରକାଶ ମାଧ୍ୟମ medium) ରୂପେ ବାଛି ନେଇଛନ୍ତି— ଅମିତ୍ରାକ୍ଷର ଛନ୍ଦ । ଯେହେତୁ ତାହା ମୁକ୍ତ ଛନ୍ଦର ଏକ ସଂଯତ ରୂପାନ୍ତର । ଏଥିରେ ଚରଣାନ୍ତମିଳର ଓ ପ୍ରଚଳିତ ମିତ୍ରାକ୍ଷରଧର୍ମୀ ବୃତ୍ତ କମ୍ବା ରାଗର ଅବଶ୍ୟମ୍ଭାବିତା ନାହିଁ । ମାଇକେଲ ମଧୁସୂଦନଙ୍କ ଠାରେ ସେ ଏଥିଲାଗି ଋଣୀ ବୋଲି କୁହାଗଲେ ବି ସେ ଏହାର ପ୍ରୟୋଗରେ ତାଙ୍କର ସମକକ୍ଷ ନଥିବା । ଅନ୍ୟପକ୍ଷରେ ମଧୁସୂଦନଙ୍କର ମଧ୍ୟ ଏହା ସମ୍ପୂର୍ଣ୍ଣ ସ୍ୱକୀୟ ନୁହେଁ ।

ମହାଯାତ୍ରା ସମ୍ପୂର୍ଣ୍ଣ ହୋଇଥିଲେ ୩୦ ସର୍ଗସମ୍ବଳିତ ହୋଇଥାନ୍ତା, ଏବଂ କବି ୧୪ ସର୍ଗ ପର୍ଯ୍ୟନ୍ତ ପୂର୍ବଲେଖ ବା ଝରଡ଼ା ପ୍ରସ୍ତୁତ କରିଥିଲେ; କିନ୍ତୁ ପୁତ୍ରର ପୀଡ଼ାଜନିତ ଦୁଃଖରୁ ସବୁ କୁଅରେ ପୋଡ଼ିଦେଲେ— ଏଭଳି କବିଚରିତଗତ କିମ୍ବଦନ୍ତୀ ଶୁଣାଯାଏ । ଆଲୋଚିତ ବିଷୟର ପାରିସରିକ ବହୁମୁଖୀ ସମ୍ଭାବନା ଓ ବ୍ୟାପକତା ଦୃଷ୍ଟିରୁ ୩୦ ସର୍ଗ-ଝରଡ଼ା ବିଶ୍ୱାସଯୋଗ୍ୟ ନୁହେଁ । କାରଣ, ପ୍ରକାଶିତ ୭ ସର୍ଗର ଅବଲମ୍ବନରେ ଏବଂ ସେଇ ସମଗ୍ର-ବିପୁଳ ପରିସରର ବିବେଚନା କଲେ ଦେଖାଯିବ ଯେ ଏତେ ଝିଅଠା ପାଇଁ ଆମ ଇତିହାସପାତ୍ରରେ ଚୂନା ନାହିଁ । ମହାଯାତ୍ରା ୧୪ଟି ସର୍ଗରେ ସମାପ୍ତ ହେବାର ଯାହା ପରିକଳ୍ପନା ଥିଲା, ଏଥିରେ ସନ୍ଦେହର ଅବକାଶ ନାହିଁ ।

ସ୍ପେନ୍‌ସର (Faeri queene'ର କଳେବର ବାରଟି ପର୍ବରେ ସମ୍ପୂର୍ଣ୍ଣ କରିବାକୁ ପରିକଳ୍ପନା (scheme) କରିଥିଲେ । ପ୍ରଥମ ତିନିପର୍ବ ୧୫୯୦ରେ, ଦ୍ୱିତୀୟ ତିନିପର୍ବ ୧୫୯୬ରେ ପ୍ରକାଶ କରିବା ଅନ୍ତେ ମୃତ୍ୟୁବରଣ କଲେ ୧୫୯୯ରେ—୪୭ ବର୍ଷ ବୟସରେ । ମନେହୁଏ, ବେଶିକାଳ ବଞ୍ଚିଥିଲେ ସେ ନିଜ ମହାକାବ୍ୟଟି ସମ୍ପୂର୍ଣ୍ଣ କରିଥାନ୍ତେ । ସେମେ ତାଙ୍କର ମହାନ୍ କୃତି (ଆମ କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ ପରି ପ୍ରାୟ ଅପ୍ରଚଳିତ ଓ ଅପଠିତ ହୋଇ

Digitized by PPRACHIN, SOA

ଯାଇଥିଲେ ହେଁ, ତାଙ୍କର ପ୍ରଭାବ ମିଲ୍‌ଟନ ଏବଂ କାଟ୍‌ସ୍‌ଙ୍କ ରଚନାରେ ବିଶେଷ ପରିଲକ୍ଷିତ ହୁଏ ।

ପୁନଶ୍ଚ, ମିଲ୍‌ଟନ୍‌ଙ୍କ ପାରାଡାଇଜ୍ ଲଷ୍ଟର ପ୍ରେରଣାରୁ କାଟ୍‌ସ୍ ମହାକାବ୍ୟ ରୂପେ Hyperion ବିରଚନା ଆରମ୍ଭ କଲେ । ୟୁରାନୁସ୍ (Urnus ଦ୍ୟାବା) ଓ ଜେଆ (Gaea, କ୍ଷ୍ୟା ବା ପୃଥିବୀ)—ଦୁହିଁଙ୍କର ଔରସଜାତ ଟାଇଟାନ୍ ନାମିତ ଷଟ୍‌ପୁତ୍ର ଓ ଷଟ୍‌କନ୍ୟା ଜାତ ହେଲେ । ତୃତୀୟ ପୁତ୍ର ହାଇପେରିଅନ୍ ହେଉଛନ୍ତି ଏ କାବ୍ୟର ନାୟକ । ସେ ତାର ପ୍ରଥମା ଭଗିନୀ ଥେୟା (Theia) ଠାରେ ସୂର୍ଯ୍ୟ ବା ଅରୁଣ (Helios) ଓ ଚନ୍ଦ୍ରମା (Moon ବା Selene) ନାମରେ ଦୁଇଜଣ ପୁତ୍ରକନ୍ୟା ଜାତ କଲେ । ଏହା ଗ୍ରୀସୀୟ ପୁରାବୃତ୍ତର ଭିତ୍ତି । ହାଇପେରିଅନ୍ କାବ୍ୟରେ ଆଦ୍ୟମ ସୂର୍ଯ୍ୟଦେବତା ହାଇପେରିଅନ୍‌ର ପତନ (fall) ଚିତ୍ର ଅଙ୍କିତ । ଏହାର ପରିଣତି କଣ ହୋଇଥାନ୍ତା ବୁଝାଯାଇ ନ ପାରେ । କବି କାଟ୍‌ସ୍ ଅନୁଭବ କଲେ ଯେ ତାଙ୍କର କାବ୍ୟ ଏକାବେଳକେ ମିଲ୍‌ଟନୀୟ ଛାଞ୍ଚରେ ବିରଚିତ ହୋଇଯାଇଛି । ଏହାପରେ ସେ କୃତିକୁ ଅସମାପ୍ତ ଅବସ୍ଥାରେ ଛାଡ଼ିଦେଇ କିଛି ମାର୍ଜନା ମାତ୍ର କରିଥିଲେ । ସେ ବସ୍ତୁତଃ ଗୀତର କବି, କବିତାର କବି; କାବ୍ୟର ବିଶେଷତଃ ମହାକାବ୍ୟର କବି ନୁହନ୍ତି । ସେ ଅକ୍ଷମତା-ସଚେତନ ହୋଇ ରଚନା ପରିତ୍ୟାଗ କଲେହେଁ ଅନେକ ସମ୍ଭାବନା କରନ୍ତି ଯେ ସେ ଯଦି ନିଜ ଢଙ୍ଗରେ ଓ ଶୈଳୀରେ ହାଇପେରିଅନ୍ ପୂର୍ଣ୍ଣତଃ ଲେଖିଥାନ୍ତେ, ତହିଁରୁ କାହିଁକି ସୂଚନା ଦେଲେ ଅବାନ୍ତର ହେବ ନାହିଁ । ଯଦୁବଂଶ ଧ୍ୱଂସରେ, ବିଶେଷତଃ କୃଷ୍ଣଙ୍କ ମହାପ୍ରୟାଣରେ ଯୁଧିଷ୍ଠିର ଓ ଅନ୍ୟାନ୍ୟ ପାଣ୍ଡବ ଏବଂ ଦ୍ରୌପଦୀ ଅନୁଭବ କରୁଛନ୍ତି—ଯେପରିକି ଏକାଠି ରାଜୈଶ୍ୱର୍ଯ୍ୟରେ ଥାଇ ମଧ୍ୟ ସେମାନେ—ପ୍ରତ୍ୟେକେ ଏକାକୀ, ନିର୍ଜନ, ଅସହାୟ ଓ ଦୁଃଖୀ । ଏ କରୁଣ ଦୃଶ୍ୟାନୁଭୂତିଟି ଯେତେ ଯେମିତି କାଟ୍‌ସ୍‌ଙ୍କ ନିମ୍ନୋକ୍ତ ମିତସାର ପଦଟିର ବାଗ୍ମୀ ପ୍ରକଟନ :—

A solitary sorrow best befits
Thy lips, and antheming a lonely grief.
—(Fall Hyperion, Book-I)

Digitized by PPRACHIN, SOA

ସ୍ୱଭାବରେ କିଟ୍‌ସ୍ ରୂପ-ରସ ଗନ୍ଧର କବି; ଇନ୍ଦ୍ରିୟୋଲ୍ଲାସୀ ସୌନ୍ଦର୍ଯ୍ୟର ପ୍ରେମୀ କବି । ରାଧାନାଥ ମଧ୍ୟ ଅନୁରୂପ କବି, ଅଧିକନ୍ତୁ ସେ କାବ୍ୟର କବି—ଏପରିକି ମହାକାବ୍ୟର କବି । ଯେ ମହାଯାତ୍ରାକୁ ଅସମ୍ପୂର୍ଣ୍ଣ ରଖିବାର କାରଣ ଗୀତିର ବା କବିତାର କବି କିଟ୍‌ସ୍-ଅନୁଭୂତ ମିଲ୍‌ଟନ୍-ପ୍ରବଣତା କିମ୍ବା ଅକ୍ଷମତା ନୁହେଁ; ଅନ୍ୟ ପକ୍ଷରେ ସ୍ପେନ୍‌ସରଙ୍କ ଭଳି କାବ୍ୟ ସମାପ୍ତି ପୂର୍ବରୁ କାଳ କବଳିତ ହୋଇଯିବାରେ ନୁହେଁ । ଯେହେତୁ ରାଧାନାଥ ୧୮୯୧-୯୨/୯୩ ମସିହାରେ ସାତ ସର୍ଗର ମହାଯାତ୍ରା ରଚନା କରିସାରି ୧୫ ବର୍ଷ ପର୍ଯ୍ୟନ୍ତ ବଞ୍ଚିଥିଲେ । ତେଣୁ ଆଲୋଚ୍ୟ ଅସମ୍ପୂର୍ଣ୍ଣତାର କୌଣସି ତୃତୀୟ ତଥା ବ୍ୟକ୍ତିଗତ କାରଣ ଥିବା ସମ୍ଭବ । ତା ସହିତ କବିଙ୍କ କୃତ-ମୂଲ୍ୟାୟନର ସମ୍ପର୍କ ପ୍ରଶ୍ନ ମଧ୍ୟ ଅବାନ୍ତର ।

ତେବେ Faerie queene ଓ Hyperion ପରି ଅସମ୍ପୂର୍ଣ୍ଣ ହେଲେହେଁ ମହାଯାତ୍ରାକୁ ମହାକାବ୍ୟ ରୂପେ ଗ୍ରହଣକରିବାରେ ବାଧା ନାହିଁ; ଯେପରି 'ଅନୁରୁ' ଅରୁଣ ଅସମ୍ପୂର୍ଣ୍ଣ ହେବା ସତ୍ତ୍ୱେ ସୂର୍ଯ୍ୟ ସାରଥି ଏବଂ ଦେବତା । ପୁନଶ୍ଚ ସେଇ ଅସମ୍ପୂର୍ଣ୍ଣତା ସତ୍ତ୍ୱେ ସୁଭଦ୍ରା କେବଳ ମନୋରମ ହେମ କାନ୍ତି ପ୍ରତିମା ନୁହନ୍ତି, ସେ ହେଉଛନ୍ତି—କୃଷ୍ଣ ଓ ଶ୍ୱେତ ବର୍ଣ୍ଣର ସେତୁସ୍ୱରୂପ ଉଜ୍ଜ୍ୱଳ ପୀତ ବର୍ଣ୍ଣ ପ୍ରତୀକଥିତ ଦେଶୀ ଓ ବିଦେଶୀ ପ୍ରତୀକତାର ସମନ୍ୱୟ ଏବଂ ଉଭୟ ଜଗନ୍ନାଥ ଓ ବଳଭଦ୍ରଙ୍କର ଶକ୍ତିରୂପା ଦେବୀ । ମହାଯାତ୍ରା ସେଇ ପ୍ରତିମାସ୍ୱରୂପା । ଆଲୋଚନା ପକ୍ଷରୁ ଓଡ଼ିଆ ସାହିତ୍ୟ ସଂସାରରେ ଏ କାବ୍ୟ ଅନ୍ୟତମ ମଧୁକୋଷ କାର୍ତ୍ତି ।

ଏ ମହାକାବ୍ୟର ଦୋଷତ୍ରୁଟି ଆଲୋଚିତ ହୋଇ ନାହିଁ; ଯେହେତୁ ସେ ସବୁଟି ଗୌଣ । କେହି କେହି ମହାଯାତ୍ରାର କଟୁ ସମାଲୋଚନା କରିଛନ୍ତି । ତଥାପି ଦୋଷତ୍ରୁଟି ସତ୍ତ୍ୱେ ଏ କାବ୍ୟ ସୁନ୍ଦର ହୋଇଛି—କୋପକଷାୟିତ ପ୍ରିୟାମୁଖ ପରି—ଶିଶିରବିନ୍ଦୁ ଜର୍ଜ୍ଜର ମଣିପ୍ରଦୀପ ପରି । ପ୍ରାଚୀନ କବି ସିଂହଳଙ୍କ କଥାରେ କୁହାଯାଉ—ଖଳ ଉଦ୍ଯୁକ୍ତୋଽପି କବୀନ୍ଦ୍ର ବାଣୀ ସୌନ୍ଦର୍ଯ୍ୟ-

Digitized by PPRACHIN, SOA

ମେବାଧିକମୁଦ୍‌ବହନ୍ତ । ୧ । ପୁନଶ୍ଚ J. S. Mill ତାଙ୍କର On Liberty ନବନ୍ଧରେ କହନ୍ତି—All good things which exist are the fruits of orginality ଏ ପର୍ଯ୍ୟନ୍ତ ମହାସାବା Faerie Queene ପର ପ୍ରାୟ ଅପଠିତ ଓ Paradise Lost ପର ଅଳ୍ପ ପଠିତ ବା କ୍ୱଚତ୍‌ପଠିତ ଅବସ୍ଥାରେ ଉପନୀତ ହୋଇ ନାହିଁ, ବରଂ ସୁପାଠ୍ୟ ହୋଇ ରହିଛି । ତେଣୁ କାବ୍ୟର ହେବା ନହେବା ବସ୍ତୁର-ପରିଣାମରୁ ବୁଝାଯାଇପାରେ — ଏ କାବ୍ୟ ହୋଇଛି ।

୧୨-୧୨-୧୯୮୦ ବେଣୁଧର ରାଉତ

---

୧ । ପୂର୍ବେ କଟୁ ଓ ଦୋଷଦର୍ଶୀ ସମାଲୋଚକଙ୍କୁ ଝେଳନନ୍ଦା ପର୍ଯ୍ୟାୟରେ ଘେନାଯାଉଥିଲା ।

Digitized by PPRACHIN, SOA

# ମହାଯାତ୍ରା

## ପ୍ରଥମ ସର୍ଗ

ପଙ୍କଜବାସିନି ଦେବି ଉତ୍କଳଭାରତି
ହାରଲେ ! କି କଲେ, କହ, କୁରୁଚୂଡ଼ାମଣି (୧)
ଶୁଣିଲେ ଯେକାଳେ ବୀର ବାର୍ତ୍ତାବହ ମୁଖୁ
ପ୍ରଭାସେ ଯାଦବଙ୍କର କ୍ଷତ-କ୍ଷୟକାଣ୍ଡ (୨)
ମହାହବ, ଧୀରମଣି ଧୈର୍ଯ୍ୟ ଧର ଆହା,
କେମନ୍ତେ ଶୁଣିଲେ ସେହି ଦାରୁଣ ବାରତା ?
କି କଲେ ଶୁଣିଣ ଚର ବିପଦ-ବାନ୍ଧବ
ଯଦୁବଂଶ-ଅବତଂସ-ଯାଦବ ପତିର
ନିଧନ ପ୍ରୟାଣ-ବାର୍ତ୍ତା, କହ କୃପାବହି
ଯଦୁବଂଶ-ଧ୍ୱଂସ ଶୁଣି କୁରୁକୁଳମଣି

---

(୧) ଶାରଳାଦେବୀଙ୍କ ମନ୍ଦିର ମହାନଦୀର ଅଦୂରବର୍ତ୍ତୀ ଝଙ୍କଡ଼ ଗ୍ରାମରେ ଅବସ୍ଥିତ । ଓଡ଼ିଶାରେ ଏହି ଦେବୀ ବିଦ୍ୟାର ଅଧିଷ୍ଠାତ୍ରୀ ରୂପେ ପ୍ରତିଷ୍ଠିତ । କୁରୁଚୂଡ଼ାମଣି—ଯୁଧିଷ୍ଠିର । (୨) ପ୍ରଭାସ—ଦ୍ୱାରକାର ଅଦୂରବର୍ତ୍ତୀ ସମୁଦ୍ରକୂଳସ୍ଥିତ ତୀର୍ଥ । ଋଷି-ଅଭିଶପ୍ତ ଯଦୁବଂଶୀୟମାନେ ଏହିଠାରେ ସୁରାପାନରେ ମତ୍ତହୋଇ ପରସ୍ପର ଯୁଦ୍ଧକରି ନିହତ ହୋଇଥିଲେ ।

Digitized by PPRACHIN, SOA

ଯୁଧିଷ୍ଠିର କଣ୍ଟୀଙ୍କି କହିଲେ ସମ୍ବୋଧି
"ହେ ବୀର, ଦୁସ୍ତର କୁରୁ-ସମର-ସାଗରେ
ତିମି-ତିମିଙ୍ଗଳ-ରୂପେ ଭ୍ରମିଲେ ଭୈରବେ
ଯହିଁ ମହାରଥୀପତି ଭୀଷ୍ମଦ୍ରୋଣ ଆଦି (୧)

ଯେ ମହାପୁରୁଷ ନିଜ କୃପା-ତରଣୀରେ
ପାରିକଲେ ପାଣ୍ଡବଙ୍କୁ କର୍ଣ୍ଣଧାର-ରୂପେ
ଚଳୁଥିଲେ ଅନୁକ୍ଷଣ ଶ୍ରୀକରେ ଯାଙ୍କର
ନ୍ୟାସ୍ତବଳ ବଳରୂପେ କୋଟି କୋଟି ପ୍ରାଣୀ (୨)

ଗଲେ ମର୍ତ୍ତ୍ୟଧାମ ତେଜି ନିଜ ଧାମେ ହେନ୍ତୁ
କେଶବ, କି ସୁଖେ ଆଉ ରହିବା ସଂସାରେ ?
ସଂସାରର ଲୀଳାଖେଳା ସରିଲା ଆମ୍ଭର
ସଂହାର-ବିଷସ୍ତ୍ର-ବିଷେ ଜରଜର ହୋଇ
ସାରସତ୍ତ୍ୱ ପାସୋରିଣ ହାରିଲୁଁ ଆୟୁଷ
ଦୁଃଖମୟ ଭବ ସିନା ମହାସୁଖ ବୋଲି
ବୋଲନ୍ତି ଜଗତେ ଯାକୁ, ଜହିତ ସେ ସଦା
ମହାଦୁଃଖେ, ଆଲୋକ ସେ ଜଡ଼ିତ ତମସେ ।
ହତହେଲେ ସୁଯୋଧନ କୁରୁକ୍ଷେତ୍ର ରଣେ, (୩)

---

(୧) ଭୀଷ୍ମ, ଦ୍ରୋଣ, କର୍ଣ୍ଣ ପ୍ରଭୃତି ଦୁର୍ଯ୍ୟୋଧନ ପକ୍ଷ ପ୍ରଧାନ ଯୋଦ୍ଧା ଥିବାରୁ ରଣସମୁଦ୍ରର ତିମ-ତିମିଙ୍ଗଳ ରୂପେ ବର୍ଣ୍ଣିତ ହୋଇଅଛନ୍ତି । (୨) ନ୍ୟାସ୍ତବଳ—ସତରଞ୍ଜି ଖେଳର ପୁତ୍ତଳିକା । (୩) ସୁଯୋଧନ—ଦୁର୍ଯ୍ୟୋଧନ ।

Digitized by PPRACHIN, SOA

ଜୟୀ ହୋଇ ଅମ୍ଭେ ତହିଁ ହେଲୁଁ ଜୀବନ୍ମୃତ (୧)
ପୁତ୍ର ମିତ୍ର ରକ୍ତ ସ୍ରୋତେ ସନ୍ତତ ସନ୍ତାପେ
ସନ୍ତାପର ସିଂହାସନ ହେଲା ସିନା ଲଭ !
ଭଙ୍ଗୁର ଭବର, ଭାଇ, ସୁଖ ଏହିପରି !
ଧନ୍ୟ ସେହି ଅତନ୍ଦ୍ରିତ-ଋଷିବୃନ୍ଦ ଭବେ, (୨)
ବିଷୟବିମୁଖ ହୋଇ ସାଧନ୍ତି ଯେ ସଦା
ସୁଖବୃଦ୍ଧି ତୃଷାକ୍ଷୟେ ତୃଷ୍ଣାଲୟେ ପୁଣି
ସୀମାତୀତ ସୁଖଚୈତନ୍ୟେ ବିହରନ୍ତି ମୁଦେ, (୩)
ନିରୁଦ୍‌ବେଗେ ରହନ୍ତି ସେ କାମକ୍ରୁ ଅନାଇ,
ଏ ଜୀବ ନୁହଁଇ ସ୍ଥିର, ସ୍ଥିରଟି ମରଣ,
ମାଟିର ଏ ଘଟ ନଷ୍ଟେ ମିଶିବ ମାଟିରେ,
ସର୍ବହର କାଳ ମହାବଳୀଠାରୁ ବଳୀ ।
କଠୋର ଏ ଧନୁ ତୋର, କଠୋର ଭୀମର
ମହାଗଦା, ଗ୍ରାସିଲ ସେ ପଦ୍ମଜନ୍ମା ପରି ।

---

(୧) ପାଣ୍ଡବପକ୍ଷ ଜୟୀ ହୋଇଥିଲେ ସତ୍ୟ, ସେ ଜୟ ମଧ୍ୟ ଶୋଚନୀୟ ହୋଇଥିଲା । ପାଣ୍ଡବମାନଙ୍କର ପ୍ରଧାନ ଆତ୍ମୀୟ, ଯଥା—ଦ୍ରୁପଦ, ବିରାଟ, ଧୃଷ୍ଟଦ୍ୟୁମ୍ନ, ଶିଖଣ୍ଡୀ, ଅଭିମନ୍ୟୁ, ଘଟୋତ୍କଚ, ଦ୍ରୌପଦୀଙ୍କ ପଞ୍ଚପୁତ୍ର ପ୍ରଭୃତି କୁରୁକ୍ଷେତ୍ରରେ ହତ ହୋଇଥିବାରୁ ଜୟୀ ପାଣ୍ଡବମାନେ ସୁଦ୍ଧା ଜୀବନ୍ମୃତପ୍ରାୟ ହୋଇଥିଲେ । ତେଣୁ ଯୁଧିଷ୍ଠିରଙ୍କ ସିଂହାସନ 'ସନ୍ତାପର ସିଂହାସନ' ହୋଇଥିଲା । (୨) ଅତନ୍ଦ୍ରିତ—ଜାଗରୂକ । ସଂସାରମାୟାରେ ଯେଉଁମାନେ ମୁଗ୍ଧ ନୁହନ୍ତି । (୩) ବିଷୟୀ ଲୋକମାନେ ବିଷୟବୃଦ୍ଧି ଦ୍ୱାରା ସୁଖୀ ହେବାକୁ ଚେଷ୍ଟା କରନ୍ତି । ଋଷିମାନେ ବାସନାକ୍ଷୟ ଦ୍ୱାରା ସୁଖୀ ହେବାକୁ ଚେଷ୍ଟା କରନ୍ତି । ବାସନା କ୍ଷୟ ହେଲେ ସୀମାବଦ୍ଧ ସୁଖ ଅସୀମ ହୁଏ । କ-ରାଶି ଶୂନ୍ୟଦ୍ୱାରା ବିଭକ୍ତ ହେଲେ ତାହାର ଭାଗଫଳ ଅସୀମ, ଏହି ଗାଣିତିକ ସୂତ୍ର ସହିତ ଏହି ଭାବର ସାଦୃଶ୍ୟ ଅଛି ।

Digitized by PPRACHIN, SOA

ଲଗାଇଛୁ ଫାଶ ସେହୁ ସମସ୍ତଙ୍କ ଗଳେ—
କି ରାଜା କି ପ୍ରଜା, କିବା ବୀର, କିବା ଭୀରୁ,
ଗୁଣୀ, ଗୁଣହୀନ ଅବା ସୁନ୍ଦର କୁତ୍ସିତ
ଧନିକ ନିର୍ଦ୍ଧନ ଅବା ପ୍ରବଳ, ଦୁର୍ବଳ,
ସେ ଗୁପତ ଫାଶୁଁ କେହି ନୁହନ୍ତି ମୁକତ
ଜନ୍ମିବା ଆଗରୁ ସେହି ଫାଶ ପିନ୍ଧି ଗଳେ
ଭୂମିଷ୍ଠ ହୁଅଇ ଜୀବ ଜନନୀ ଜଠରୁ,
ନିଜ ଧନ କ୍ଷୀଣ ଦେଖି ଦୁରନ୍ତ ମହାଷ୍ଟ
ଅତର୍କିତେ ମହାରବେ ଓଟାରି ସେ ଫାଶ, (୧)
କାହାର ହେଳକୁ କାଳ ଅନାଇ ନ ବସେ,
ପାସୋରିଲେ ତାକୁ ସେହି କେବେ ନ ପାସୋରେ
ଅଦ୍ଭୁତ ସେ ଚୈର, ତାକୁ ବାନ୍ଧିଲେ ତୋରଣ
ପାଟେଶ୍ୱ ଲଙ୍ଘିଣ ପୁରେ ପଶେ ଅନାୟାସେ
ତାଳକିଳିତ ଗୃହେ ପଶେ ଅକୁଣ୍ଠିତେ (୨)
ନ ଫିଟାଇ ସେ ତାଳକ, ଶୁଣ ଶିରୋମଣି ।
ହେ ଅସି ଖୋଜିବା ଆଗୁଁ ଏ ଭବର ମାୟା
ତେଜି ହେ ବୀରେନ୍ଦ୍ର, ଚାଲ ଖୋଜିବା କାଳକୁ ।
ବୋଇଲେ କଣ୍ଟାଟୀ ତହୁଁ ଅଗ୍ରଜ ସମ୍ମୁଖରେ,
“ହେ ଗୋସାଇଁ, ଶୁଣ ନାହିଁ କାଳ କାହାରିକ,
ସମସ୍ତଙ୍କୁ ଲୋଡ଼ି ନଏ ଯଥାକାଳେ ସେହି,
ମୁଁ ଯାଇ ଲୋଡ଼ିବ ତାକୁ ତୁମ୍ଭର ଗହଣେ ।”

---

(୧) କାଳ କାହାର ସୁବିଧା-ଅସୁବିଧା, ସମୟ-ଅସମୟ ପ୍ରତି ଦୃକ୍‌ପାତ କରେ ନାହିଁ । ନିଜର ସମୟ ବୁଝି ପ୍ରାଣୀମାନଙ୍କୁ କବଳିତ କରେ । (୨) ତାଳକିଳିତ – ତାଳଦ୍ୱାର ବନ୍ଦ ।

Digitized by PPRACHIN, SOA

ଭୀମ, ବେନ ମାଦ୍ରୀସୁତେ କରନ୍ତୀ-ବଚନେ
ଜଣାଇଲେ ଅଭିମତ ପରମ ଆଗ୍ରହେ,
ହମାଦ୍ରି ପ୍ରସ୍ଥାଣେ ସର୍ବେ ବଳାଇଲେ ମନ ।
ଶୁଣି ଏ ସଂକଳ୍ପ ଦେବୀ ଦ୍ରୁପଦନନ୍ଦିନୀ
ସହଚରୀ ହେବା ପାଇଁ ବନପ୍ରସ୍ଥବ୍ରତେ
କଲେ ନାନା ମତେ ଅଳି ଭୂପତି-ଛାମୁରେ,
କାନ୍ଦଣ କହିଲେ ଦେବୀ ଗଦ୍‌ଗଦ ସ୍ୱରେ—
"ପାଣ୍ଡବର ବନ୍ଧୁ ବୋଲି ବାନ୍ଧିଥିଲେ ଯାନା
ଭୁବନେ ଯେ ମହାପ୍ରଭୁ, ସେ ପ୍ରଭୁ ବିହୁନେ
କେଉଁ ଲୋଡ଼ା ପାଣ୍ଡବର, ନାଥ ଏ ସଂସାରେ,
କେଉଁ ଲୋଡ଼ା ଏ ସଂସାରେ ପାଣ୍ଡବ ବିହୁନେ
ପାଣ୍ଡବ ଶରଣ ବିନା ଦ୍ରୁପଦକନ୍ୟାର ?
କି ଲୋଡ଼ା ମୋହର ଅଶ୍ରୁସିକ୍ତ ରାଜଭୋଗେ,
କି ସୁଖ, ହେ ପାଣ୍ଡୁନାଥ, ଏ ଦଗ୍‌ଧ ପରାଣେ
ଗୃହେ ଥାଇ ? ଥାଉ ଗୃହସୁଖ ନେଇ,
ରାଜ୍ୟ ରାଜ୍ୟସୁଖ ନେଇ, ଏ ଦେବଙ୍କ ଛାଡ଼ି
ଛାୟା ପ୍ରାୟ ତୁମ୍ଭ ସଙ୍ଗେ ବିଚରିବି ବନେ,
ସୁଖୀ ଥିଲି ବନେ, ଦୁଃଖୀ ହେଲେ ସିଂହାସନ ।
ଦୁଃଖୀ ପାଇଁ ସ୍ଥାନ କାହିଁ ସଂସାର ଗହଳେ ? (୧)
ଦୁଃଖୀ ଲୋଡ଼େ ନିକାଞ୍ଚନ, ଦୁଃଖୀର ନୟନେ
ସଂସାର-ସମ୍ପଦ ସିନା ମହାବିଡ଼ମ୍ବନା !

---

(୧) ସଂସାରରେ ସମସ୍ତେ ସ୍ୱାର୍ଥସଂଗ୍ରାମରେ ବ୍ୟତିବ୍ୟସ୍ତ । ଦୁଃଖୀ ଦୁଃଖରେ ସହାନୁଭୂତି ଦେଖାଇବାକୁ କାହାରି ଅବସର ନ ଥାଏ ।

Digitized by PPRACHIN, SOA

ନିଜାନ୍ତ ନିଯ୍ନେ ନାଥ, ଯେସନେ ଚନ୍ଦ୍ର କା
ଅକ୍ଷମ ସମ୍ପଦ-ଦୁଃଖ ମେଣ୍ଟାଇବା ପାଇଁ,
ପକାଏ କେବଳ ମାତ୍ର କଣ୍ଟକ ସେ ପଥେ
ସମବେଦନାର, ନାଥ, ଏହୁ ତାର ସ୍ୱତ ! (୧)
ଭେଦାଭେଦ ବାରଦାର ପ୍ରାସାଦେ କୁଟୀରେ,
ସରଚ୍ଛ ସେ ଧନ ମୋର ଚରଧନ ଲଗି,
ନୁହଇ କେବଳ ମୁହିଁ ସମ୍ପଦ-ସଙ୍ଗିନୀ
ପାଣ୍ଡବର, ପୂର୍ବେ ଯଥା ସେବୁଥିଲି ବନେ
ଚରଣେ ତୁମ୍ଭର, ଏବେ ସେବିବି ସେମନ୍ତେ,
ଏହି ଭିକ୍ଷା ମାଗେ ଦାସୀ ଶ୍ରୀପଦେ ଗୋସାଇଁ ।”
ବଜ୍ରମଣି ଯୁଧିଷ୍ଠିର ଯାଜ୍ଞସେନୀ-ବାଣୀ
ଶୁଣିସିବା ପାଇଁ ତାଙ୍କୁ ଦେଲେ ଅନୁମତ ।
ତହୁଁ ରାଜସିଂହାସନେ ପରୀକ୍ଷିତଙ୍କର (୨)
ଅଭିଷେକ-ବିଧି ରାଜା ଯତନେ ସମାଧି,
ବୈଶ୍ୟା-ଗର୍ଭଜାତ ଶାନ୍ତ ଧୃତରାଷ୍ଟ୍ରସୁତ
ଯୁଯୁତ୍ସୁଙ୍କୁ ନିଯୋଜିଲେ ପ୍ରଧାନଧି ପଦେ (୩)
ସାମ୍ରାଜ୍ୟ ଶାସନ ପାଇଁ ଶୈଶବ ତାଙ୍କର,
ତହୁଁ ବୃଦ୍ଧା ସୁଭଦ୍ରାକୁ ରାଇ ନରସାଇଁ

---

୧ । ଯେଉଁମାନଙ୍କର ସମ୍ପଦ ଅଛି, ସେମାନେ ନିଜ ଦୁଃଖରେ ଅନ୍ୟର ସହାନୁଭୂତ ପାଆନ୍ତି ନାହିଁ । (୨) ପରୀକ୍ଷିତ— ଅଭିମନ୍ୟୁଙ୍କ ପୁତ୍ର । (୩) ଯୁଯୁତ୍ସୁ—ଧୃତରାଷ୍ଟ୍ରଙ୍କ ପୁତ୍ର । କୁରୁଯୁଦ୍ଧ ଆରମ୍ଭ ସମୟରେ ଯୁଧିଷ୍ଠିର ଧର୍ମଡାକ ଦେବାରୁ ଧର୍ମଭୀରୁ ଯୁଯୁତ୍ସୁ ଦୁର୍ଯ୍ୟୋଧନଙ୍କ ପକ୍ଷ ତ୍ୟାଗକରି ନିଜ ଦଳ ସହିତ ପାଣ୍ଡବ ଦଳରେ ମିଶିଥିଲେ ।

Digitized by PPRACHIN, SOA

କହିଲେ, 'ଏ ଶିଶୁ, ଦେଖ ହେବ ଦଣ୍ଡଧାରି
ମୋର ଅନ୍ତେ ହସ୍ତିନାରେ ରାଜସିଂହାସନ ।
ଏକମାତ୍ର କୁଳାଙ୍କୁର ଏହି କୁରୁକୁଳେ !
ଗୋଟିଏ ପ୍ରସୂନ, ଆହା, ବଶ୍ୟେ-ବଶ୍ୟ-ଗ୍ରାସି
କାଳ-ଦାବାନଳ-ମୁକ୍ତ କୁରୁବଂଶବନେ । (୧)
ଭବତଳେ ଜୀବନ୍ତ ଏ ଦୟା-ନିଦର୍ଶନ
କାଳ ଦର୍ପହାରୀ ଦେବ ଦୀନବନ୍ଧୁଙ୍କର !
ପତି-ପିତୃ-ଭ୍ରାତୃ-ଶୋକେ-ଆତୁରା ଉତ୍ତରା
ଅଶ୍ୱତ୍ଥାମା-ଅସ୍ତ୍ରାନଳେ ତ୍ରସ୍ତ ହୋଇ ଯେବେ
ଡାକିଲେ ଶରଣଗଲା ଶରଣବତ୍ସଳ—
ପାଦପଦ୍ମେ, ଚକ୍ରାୟୁଧ ଉଦର ଉଢ଼ାଳେ
ବେଷ୍ଟିତ ଆଚ୍ଛାଦି ସେହି ଦୁଃଖିନୀ-ଗରଭ
ବଞ୍ଚାଇଲେ ଶିଶୁହିହି ଜନମି ଜୀବନ,
ପାଳିବ ଏ ଶିଶୁ ଦେବ, ପରମ ଯତନେ
ଗୃହାଶ୍ରମେ, ମୋର ଏହି ଅନ୍ତିମ ନିୟୋଗେ ।" (୨)
ସୁଭଦ୍ରାଙ୍କୁ ଏହିରୂପେ ଆଦେଶି ନୃମଣି
ଆଚରିଲେ ଶ୍ରାଦ୍ଧବିଧି ମାତୁଳ ବଂଶର,
ଉଗ୍ରସେନ, ବସୁଦେବ ଆଦି ଗୁରୁଜନେ
ବହିତବିଧାନେ ବହି ପ୍ରେତ ଜଳାଞ୍ଜଳି, (୩)

---

(୧) ଯୁଦ୍ଧରେ ସମସ୍ତେ ନିହତ ହୋଇଥିବାରୁ ଏକମାତ୍ର ପରୀକ୍ଷିତ ହସ୍ତିନା ସିଂହାସନର ଉତ୍ତରାଧିକାରୀ ଥିଲେ । (୨) ଅନ୍ତିମ ନିୟୋଗ—ଶେଷ ଆଦେଶରେ । (୩) ଯୁଧିଷ୍ଠିର ଯଦୁବଂଶୀୟ ବସୁଦେବ ପ୍ରଭୃତିଙ୍କର ଭଣଜା ଥିଲେ ।

Digitized by PPRACHIN, SOA

ଅସ୍ତ୍ରଗୁରୁଙ୍କର ଗୁରୁ ବୃଦ୍ଧ ଭରଦ୍ୱାଜ, (୧)
ବଦରିକାଶ୍ରମବାସୀ ଋଷି ଦ୍ୱୈପାୟନ, (୨)
(ଭାରତ-ଭାରତୀ ଯାଙ୍କ ରଚନା-ନର୍ତ୍ତକୀ),
ସୂର୍ଯ୍ୟ-ଶିଷ୍ୟ ଯାଜ୍ଞବଲ୍କ୍ୟ ସଂହିତା-ପ୍ରଣେତା
ଯଜ୍ଞରତ ଜନକର ଗୁରୁ ପୁରାତନ, (୩)
ମାର୍କଣ୍ଡେୟ କଲ୍ପଜୀବୀ, ଦେବର୍ଷି ନାରଦ,
ଅନନ୍ତେ ଅନନ୍ତ-ନାମ-କୀର୍ତ୍ତନ-ରସକ, (୪)
ଯା ସଙ୍ଗୀତେ ପ୍ରେମୋଲ୍ଲାସେ ପ୍ରସ୍ଫୁରଣ ଛଳେ
ଲୋମାଞ୍ଚ ଲଭନ୍ତି ନଭେ ଜ୍ୟୋତିଷ୍କ-ମଣ୍ଡଳୀ,
ଜ୍ଞାନୀନ୍ଦ୍ର ବାଦରାୟଣୀ ଆଦି ମୁନିଗଣେ (୫)
ମହାଦରେ ଡାକି ପୂଜା ଦେଲେ ନାନା ଦାନ
ଗୋ, ଭୂମି, କାଞ୍ଚନ, ରତ୍ନ, ବସ୍ତ୍ର, ଆଭରଣ,
ଗଜ, ବାଜି ମହୋଜ୍ଜ୍ୱଳ ସ୍ୟନ୍ଦନାଦି କରି
ସ୍ୱର୍ଗତ ଶାରଙ୍ଗଧର କେଶବ ଉଦ୍ଦେଶେ (୬)
କୁଳଗୁରୁ କୃପାଗୃର୍ଦ୍ଧି-ପଦେ ପଶ୍ଚାଦିତେ (୭)
ସମର୍ପି କହିଲେ, 'ଗୁରୋ, ଦାସ ଅନୁଦାସ
ଏ ରୂପରେ, ଦନ୍ତାବନ୍ଧି ବାଳେ ଯଥା ମୋତେ

---

୧। ଭରଦ୍ୱାଜ ପାଣ୍ଡବମାନଙ୍କର ଅସ୍ତ୍ରଗୁରୁ ଦ୍ରୋଣାଚାର୍ଯ୍ୟଙ୍କର ଗୁରୁ ଅର୍ଥାତ୍ ପିତା। (୨) ଦ୍ୱୈପାୟନ ବ୍ୟାସ—ମହାଭାରତପ୍ରଣେତା। (୩) ଜନକଙ୍କ ଦୀକ୍ଷାଗୁରୁ ଯାଜ୍ଞବଲକ୍ୟ ଭାରତବର୍ଷର ଜଣେ ପ୍ରଧାନ ସ୍ମୃତିକାର। (୪) ଆକାଶରେ ଈଶ୍ୱରଙ୍କ ନାମ ସଂକୀର୍ତ୍ତନରେ ରତ। (୫) ବାଦରାୟଣୀ—ଶୁକଦେବ। (୬) ପରଲୋକଗତ ଶ୍ରୀକୃଷ୍ଣଙ୍କ ଉଦ୍ଦେଶ୍ୟରେ। କୃଷ୍ଣଙ୍କ ଧନୁର ନାମ 'ଶାରଙ୍ଗ' ଥିଲା। (୭) କୃପାଗୃର୍ଦ୍ଧି—ଦ୍ରୋଣଙ୍କ ଶ୍ୟାଳକ। ପାଣ୍ଡବମାନଙ୍କର ଅନ୍ୟତମ ଅସ୍ତ୍ରଗୁରୁ।

Digitized by PPRACHIN, SOA

ଶିଖାଇଲେ ଧନୁର୍ବେଦ. ଏହାଙ୍କୁ ସେପରି
ଶିଖାଇବ, ଏହି ଭିକ୍ଷା ମାଗୁଛି ପ୍ରସ୍ଥରେ;
ଆହେ ରଣବିଶାରଦ ସେନାପତି ଦଳ,
ତୁମ୍ଭ ବାହୁ-ଶୁଶ୍ରୂଷା-ଛଳେ ବଢ଼ୁ ଏ କୁମର
ମଣ୍ଡିବାକୁ ହସ୍ତିନାର ଶୂନ୍ୟ ସିଂହାସନ,
ରଣମୁଖେ ଅଗ୍ରଯାୟୀ ଥିଲା ଯେ ତୁମ୍ଭର
ଯା ବିକ୍ରମେ ବିଚଳିତ ହୋଇ ରଣସ୍ଥଳେ
ଲଙ୍ଘି ଣ ସମର-ଧର୍ମ ଆଗ୍ନ୍ୟେ ଆପଣେ
ଅସମ ସମରେ ଯାର ସାଧିଲେ ନିଧନ,
କୁରୁସେନା ବିମର୍ଦ୍ଦନ, ପରବ୍ୟୂହଭେଦୀ
ମହାରଥୀ ଅଭିମନ୍ୟୁ-ହୃଦୟ-ଶୋଣିତ
ବହୁଛି ଏ ଶିଶୁ-ଦେହେ ଏହା ନ ବିଯୋର
ରଖିବ ଶିଶୁକୁ ନିଜ ଦେହ ଆବରଣେ,
ନେତ୍ରେ ନେତ୍ର-ପତ୍ର ଯଥା, ପ୍ରମାଦେ ସଙ୍କଟେ
ସାଙ୍ଗ ହେଲା ଆଜଠାରୁ ରାଜପଣ ମୋର,
ସମସ୍ତଙ୍କୁ କର ଯୋଡ଼ି ମାଗୁଛି ମେଲଣି,
ବନେ ଚରି ଆଚରିବି ଆରଣ୍ୟକ ବ୍ରତ ।"
ବିସ୍ମିତ ସରବେ ହେଲେ ରାଜାଙ୍କ ବଚନେ ।
'ରାଜ୍ୟ ତେଜି ଯିବେ ରାଜା' ଏ ବାର୍ତ୍ତା ନଗରେ,
ନଗରୁ ନଗରେ, ତହୁଁ ବ୍ୟାପି ଜନପଦେ,
ବୁଡ଼ାଇଲା ଶୋକୋଚ୍ଛ୍ୱାସେ ସମଗ୍ର ମେଦିନୀ ।
ବୋଲିବୋଲି ହେଲେ ଲୋକେ ଯାର ଛତ୍ରତଳେ
ଜାଣୁ ନ ଥିଲେଟି ଜନେ ନିର୍ଦ୍ଦୋଷ ଯାବତ
ରାଜଦଣ୍ଡ ଅଛି ବୋଲି, ଦୋଷୀ ଦେଖି ପୁଣି
ନ ସହାର ବହୁଥିଲା ସଂସ୍କାର ମାତର,
କରୁଣା-କୋମଳ ନ୍ୟାୟ ଯାର ଏ ଜଗତେ;

Digitized by PPRACHIN, SOA

ତନଲେକେ ପୁଣ୍ୟଶ୍ଳୋକ ହେନ୍ତୁ କୁରୁମଣି
ଯିବେ କି ଅମ୍ଭଙ୍କୁ ଗୁଡ଼ି ଅନ୍ଧାରେ ଦଇବ,
ହତେ କି ସାଧିଲୁ ଦାଉ ତୁହି ଏତେ ଦିନେ,
ହେ ଧର୍ମ, ହେ ସତ୍ୟ, ତୁମ୍ଭେ ହେଲଟି ଅନାଥ ।
କେ ଅଉ ନିଷ୍କାମେ ଧନ, ପ୍ରାଣ ମାୟା ତେଜି
ତୁମ୍ଭଙ୍କୁ ତୁମ୍ଭର ଲାଗି ଭଜିବ ଏ ଭବେ ?
ଦୟା, କ୍ଷମା, ତୁମ୍ଭେ ଏବେ, ହେଲଟି ଅଧୀର ?
ଅଧୀରା ମା ବସୁନ୍ଧରା !—ଅଧୀର ସନ୍ତତ
ହେଲେ ସିନା ଏତେ ଦିନେ ଦୀନହୀନ ପ୍ରଜା ।
ଚଉଦିଗୁଁ ପ୍ରଜାପୁଞ୍ଜ ଆସି ଦଳେ ଦଳେ
(ଚଉପାଶୁଁ ହ୍ରଦ ମୁଖେ ଗିରିସ୍ରୋତେ ଯଥା)
ନଗର-ପ୍ରାଙ୍ଗଣ ପ୍ଲାବି ଲୋକ-ପ୍ଲାବନେ
ନୃପଙ୍କ ଶ୍ରୀମୁଖେ କରେ ରହିବାକୁ ଆଜ୍ଞା ।
ଭବର ଭଙ୍ଗୁର ଭାବ ଜାଣି ଯୁଧିଷ୍ଠିର
ନିବେଶିଣ ଥିଲେ ଚିତ୍ତ ସୁଚେତା ଶାଶ୍ୱତେ (୧)
ତେଣୁ ପ୍ରଜାଙ୍କର ମାୟା ତୁଟିଲେ ସହଜେ ।
ସମାଦରେ ଯଥାବିଧି ଆମନ୍ତ୍ରି ଭୂପତି
ସାମନ୍ତ୍ୟ-ରାଜନ୍ୟ ଦଳେ, ପୌର ଜାନପଦେ,
ମହାଯାତ୍ରା ଲାଗି ତହୁଁ ହେବେ ସଜ୍ଜୀଭୂତ
ଗୃହଭାର କୁଣ୍ଠା ସହ; ବରାଙ୍ଗୁ ଉତାରି
ରତ୍ନମଣି ଶିରସ୍ତ୍ରାଣ ସାରସ୍ୱତ ଭୂଷା,
ବସନ ଭାସ୍ୱର ଯେତେକ ଗଢ଼ା ସୌରକରେ;
ପିନ୍ଧିଲେ ବଲ୍‌କଲ ତ୍ୟେଜି, କ୍ଷୌମ ସବ୍ୟସାଚି;
ଯାମଳ ସୋଦର ବେନି, ପାଞ୍ଚ ମହାଦେବୀ

---

(୧) ଶାଶ୍ୱତେ—ଭଗବାନଙ୍କ ପ୍ରତି ।

Digitized by PPRACHIN, SOA

ଦ୍ରୁପଦ-ଦୁଲଣୀ ପଦ୍ମପଲାଶ-ଲୋଚନା,
ବଲ୍କଳୀ ରାଜାଙ୍କୁ ଦେଖି ସର୍ବ ହୃଷ୍ଟମନେ
ସଜହେଲେ ଦେହ୍ନେଣି ଅରଣ୍ୟକ ବେଶେ,
ପୂର୍ବେ ଦ୍ୟୁତେ ପରାଜିତ ହୋଇ ପଞ୍ଚଭାଇ
କୃଷ୍ଣା ସଙ୍ଗେ ଯେଉଁ ବେଶେ ବାହାରିଣ ଥିଲେ
ପୁରୁଁ ପୁରନାରୀବ୍ରଜ ପୁଣି ସେହି ବେଶେ
ଦେଖି ସର୍ବେ ଜରଜର ହେଲେ ମହାଶୋକେ,
ମର୍ମଭେଦୀ ହାହାକାର ପୂରିଲା ନଗର
ମାତ୍ର ଏ ବିଷାଦେ ଭାଗୀ ନୋହିଲେ ଯାହାଁକେ,
ଥୋଇଥିଲେ ମନ ଯେଣୁ ମାୟାମୋହ ପାରେ
ତାମସ ପ୍ରପଞ୍ଚାତୀତ ଅନାମୟଧାମେ ।
ଆଚରି ସେ କାଳୋଚିତ ଯଜ୍ଞ ପାଣ୍ଡୁସୁତେ
ଶୋଭନା ହସ୍ତିନା ରୌପ୍ୟରସନା ଜାହ୍ନବୀ
ଜଳେ ଯଜ୍ଞାନଳ ତହିଁ କଲେ ଜଳପାତ ।
କୃଷ୍ଣା ସଙ୍ଗେ ପଞ୍ଚଭାଇ ବାହାରିଲେ ପୁରୁ
ଦିଶିଲା ଅନାଥାପ୍ରାୟ ହସ୍ତିନାନଗର
ବିକଳା, ଯେସନ ରାହୁଗ୍ରସ୍ତ ଶଶିକଳା !
ରୌଦ୍ରବେଗେ ଉଠିଲା ମହାଶୋକର ଚହଳ,
ଉଦ୍‌ବେଳେ ସାଗର ପ୍ରାୟେ ଲକ୍ଷ ଲକ୍ଷ ପ୍ରଜା,
ଗଳଦଶ୍ରୁ ନେତ୍ରେ, ପୁଣି ଦୀନହୀନ ବେଶେ
ଉଚ୍ଚସ୍ୱରେ କାନ୍ଦି ସର୍ବେ ଚାଲିଲେ ଗହଣେ,
ପାଦଚାରି ବଲ୍କଳିନୀ ଦ୍ରୌପଦୀଙ୍କୁ ଦେଖି
ବକ୍ଷେ କର ମାରି ଉଚ୍ଚେ କାନ୍ଦିଲେ ଅଙ୍ଗନା ।
ଅଳିନ୍ଦେ, ଗବାକ୍ଷେ, ଦ୍ୱାରେ, ପ୍ରାସାଦ ଶିଖରେ,
ଚାରି ସହୋଦର ପୁଣି ଯାଜ୍ଞସେନୀ ମେଳେ ।

Digitized by PPRACHIN, SOA

ଚାଲିଲେ ରାଜେନ୍ଦ୍ର ତେଜି କୁଳ ରାଜଧାନୀ,
ସ୍ନେହବଶେ ଶ୍ୱାନଟିଏ ଚାଲିଲା ପଶ୍ଚାତେ
ଚାଲିଲେ ରାଜେନ୍ଦ୍ର ସହ ଲକ୍ଷ ଲକ୍ଷ ପ୍ରଜା,
ପାତ୍ର, ମନ୍ତ୍ରୀ, ସଭାସଦ, ନଗର ନିଯୋଗ,
ବହୁଦୂର ଯାଇ ସ୍ନେହେ ବାହୁଡ଼ି ଯିବାକୁ
ରାଜାଙ୍କ ବିନମ୍ର ବାଣୀ ଶୁଣି ପୁନଃ ପୁନଃ
‘ଆଉ ଖଣ୍ଡେ’ ‘ଆଉ ଖଣ୍ଡେ’ କହି କଲେ ଅଳି
ବାଷ୍ପାକୁଳ ନେତ୍ରେ, ବାଷ୍ପ ଗଦ୍‌ଗଦ ବଚନେ ।
ପୋଷିଥିଲେ ଆଶା ଅବା ଫେରିବେ ପାଣ୍ଡବେ
କୁରୁପୁରେ ବୃଥା ଆଶା ! ଫେରଇ କି କେବେ
ସିନ୍ଧୁଗାମୀ ସ୍ରୋତେ, ଅବା ରୁକ୍ମିଣୀ ରଥ ?
ରବିଙ୍କୁ ଦିନାନ୍ତେ ଦେଖି ଅସ୍ତାଚଳ ଚୂଡ଼େ
କୃପ ଯୁଯୁତ୍ସୁଙ୍କ ସଙ୍ଗେ ସର୍ବେ ବାହୁଡ଼ିଲେ
ମହାଶୋକେ, ରାଜଶୂନ୍ୟ ପୁରେ ପୁରବାସୀ ।
ଉଲୂପୀ ନାଗେନ୍ଦ୍ର କନ୍ୟା ଜହ୍ନୁ ସୁତା ସ୍ରୋତେ (୧)
ଝାସିଣ ପଶିଲେ ତହିଁ ଅତଳ ପାତାଳେ ।
ବାହୁଡ଼ିଲେ ପତିଶୋକେ ବିଧୁରା ସୁନ୍ଦରୀ
ଚିତ୍ରାଙ୍ଗଦା ମଣିପୁରେ ନିଜ ଦଳବଳେ (୨)

---

(୧) ଉଲୂପୀ—ନାଗକନ୍ୟା, ଅର୍ଜ୍ଜୁନପତ୍ନୀ । (୨) ଚିତ୍ରାଙ୍ଗଦା—ମଣିପୁରର କନ୍ୟା, ଅର୍ଜ୍ଜୁନପତ୍ନୀ ।

Digitized by PPRACHIN, SOA

# ଦ୍ୱିତୀୟ ସର୍ଗ

ତେଜି ପ୍ରପଞ୍ଚର ମାୟା ତହୁଁ ପଞ୍ଚଭ୍ରାଇ (୧)
ପାଞ୍ଚାଳୀ ସହିତେ ଆଗେ ଗଲେ ପୂର୍ବାଞ୍ଚଳେ
ତୀର୍ଥାଟନ ମହାବ୍ରତ ମନାସି ମାନସେ,
ଏକମାନ ଧର୍ମେନ୍ଦ୍ରୁଖ ହୃଦୟ ତାଙ୍କର,
ଆତ୍ମା ପରମାତ୍ମା ପ୍ରତି କରନ୍ତେ ଧାବନ୍ତ,
ବଶ୍ୟାସରେ ମହାବଳୀ, କ୍ଳେଶ ମଣି ସୁଖ
ଭ୍ରମିଲେ ଅସଂଖ୍ୟ ଗିରି, କାନ୍ତାର କନ୍ଦର,
ନଦ, ନଦୀ, ମହାରଣ୍ୟ, ଅଗ୍ରେ ଯୁଧିଷ୍ଠିର
ଧର୍ମଙ୍କର ସତ୍ତ୍ୱଗୁଣେ ଅଗ୍ରଣୀ ଜଗତେ,
ବୟୋଜ୍ୟେଷ୍ଠ, ଗୁଣଜ୍ୟେଷ୍ଠ, ଶିଷ୍ଟ ଶାନ୍ତ ମତି
ତାଙ୍କ ପଛେ ଭୀମ, ଭୀମ ପଛେ ଧନଞ୍ଜୟ
ଧନୁଷ୍ପାଣି, ଶର ପୂର୍ଣ୍ଣ ଦିବ୍ୟ ତୂଣ ଧାରୀ,
ଯେଣୁ ସେହି ସବ୍ୟସାଚୀ, ଧନୁ ତୂଣ ମାୟା
ତୁଟି ନ ପାରଣ ସଙ୍ଗେ ଆଣିଥିଲେ ବଳୀ
ସେହି ଧନୁ ସେହି ତୂଣୀର ବୈରାଗ୍ୟ ବିରୋଧୀ ।
ଗୁଲନ୍ତି ଫାଲ୍‌ଗୁନ ପଛେ ମାଦ୍ରୀ ସୁତ ବେନି,
ତାଙ୍କ ପଛେ ଯାଜ୍ଞସେନୀ ଗଜେନ୍ଦ୍ର ଗାମିନୀ
ରମଣୀ ସୀମନ୍ତରେଖା ରାମା ମହୀତଳେ,
ସ୍ନେହ ଗୁଣେ ବନ୍ଧ ଶ୍ୱାନ ଗୁଲେ ସବୁ ପଛେ,
ମଥୁରା କଳୁଷହରା ଜଗତୀରୁ ଯହିଁ (୨)
ଦେଖୁଥିଲେ କୁତୂହଳେ ଯାଦବୀ ଯୁବତୀ,

---

(୧) ପ୍ରପଞ୍ଚ—ସଂସାର । (୨) ଜଗତୀ—ଚନ୍ଦ୍ରଶାଳା ।

Digitized by PPRACHIN, SOA

ଘନ ନୀଳଦ୍ୟୁତି ଚକ୍ରବାକନୀ ଯମୁନା,
ହେମ ଭକ୍ତିମତୀ କି ସେ ଅବନୀର ବେଣୀ (୧)
ପ୍ରୟାଗ, ପାବନ ଗଙ୍ଗା ଯମୁନା ସଙ୍ଗମେ,
କଳ୍ପସ୍ଥାୟୀ କଳ୍ପବଟ ଛାୟାରେ ଶୀତଳ;
ପତିଙ୍କ କୁଶଳ ଭିକ୍ଷା ପତିପ୍ରାଣା ସୀତା
କରିଥିଲେ ଯାର ମୂଳେ ବନଯାତ୍ରା କାଳେ,
ଚନ୍ଦ୍ରଶୂଳ ଶିଖୋପରି ପୁଣ୍ୟ ବାରଣସୀ,
ରହି ଶୈଳୋପମ ଯହିଁ ତୁଙ୍ଗ ସୌଧପନ୍ତି
ଦେଖନ୍ତି ବିମ୍ବିତ ମୁଖ ଜାହ୍ନବୀ ଦର୍ପଣେ, (୨)
ସରୟୂର ସ୍ରୋତେ ପୂତ ସାକେତ ନଗରୀ
ରଘୁକୁଳ ରାଜଧାନୀ ଧନ୍ୟା ଧନ୍ୟ ଗୀତେ (୩)
ବରେଣ୍ୟ ନୈମିଷାରଣ୍ୟ, ପର୍ଣ୍ଣାଶନ ବ୍ରତୀ (୪)
ଯତିନ୍ଦ୍ରେ ଅଧ୍ୟାତ୍ମବାଦୀ ଅବିରତେ ରତ
ଯହିଁ ଅଧ୍ୟାତ୍ମିକ ଯୋଗେ, ହୃଦ ବେଦୀ ଯହିଁ,
ଆତ୍ମା ଯଜମାନ, ଶ୍ରଦ୍ଧା ପତ୍ନୀସ୍ୱରୂପିଣୀ,
ତପ ବହ୍ନି, କାମ ଆଜ୍ୟ, କ୍ରୋଧ ଯଜ୍ଞପଶୁ,
ଧୈର୍ଯ୍ୟଯୂପ, ତ୍ୟାଗ ହୋତା, ବଚନ ଉଦ୍‌ଗାତା,
ସୋମରସ ସୁମଧୁର ଭକ୍ତି ଅଧୋକ୍ଷଜେ;
ଗୟାପୁଣ୍ୟ ପ୍ରତିଷ୍ଠିତ ଗୟାସୁର ଶିରେ,

---

(୧) ନୀଳ ଯମୁନା ଅବନୀର ବେଣୀ ପରି, ପୀତ ଚକ୍ରବାକମାଳା ସେହି ବେଣୀର ସୁବର୍ଣ୍ଣ ରଚନା ପରି । (୨) କାଶୀ ହରଙ୍କ ତ୍ରିଶୂଳ ଶିଖା ଉପରେ ଅବସ୍ଥିତ ବୋଲି ପୌରାଣିକ କିମ୍ବଦନ୍ତୀ ଅଛି । (୩) ସାକେତ—ଅଯୋଧ୍ୟା, ରାମାୟଣରୂପୀ ଧନ୍ୟ ଗୀତ ଦ୍ୱାରା ଯାହା ଧନ୍ୟ ଅର୍ଥାତ୍ ପ୍ରଖ୍ୟାତା । (୪) ନୈମିଷାରଣ୍ୟ—ଆଧୁନିକ ନାମ ନିମଖାର ।

Digitized by PPRACHIN, SOA

ଯହିଁ ବହେ ଫଲ୍‌ଗୁ ଅନ୍ତଃସଲିଳା ତଟିନୀ,
ରାଜଗିର ବିରାଜିତ ଶତ ପ୍ରସ୍ରବଣେ (୧)
ଜରାସନ୍ଧେ ବଧି ଥିଲେ ଗିରିଦୁର୍ଗେ ଯହିଁ
ବାୟୁ ସୁତ ବୃକୋଦର କେଶବ କୌଶଳେ,
ମହାଶକ୍ତିପୀଠ ପୂତ ଭାଗୀରଥୀ ତଟେ
ବିରାଜନ୍ତି ଯହିଁ ଦେବୀ ନୃମୁଣ୍ଡମାଳିନୀ, (୨)
ଲୌହିତ୍ୟତରଙ୍ଗେ ଧୌତପ୍ରାଗ୍‌ଜ୍ୟୋତିଷପୁରୀ
ଲଭିଛି ଅଭିଖ୍ୟା ଯେହୁ କାମାଖ୍ୟା ପ୍ରସାଦେ (୩)
ପାଣ୍ଡୁଜଳାରମ୍ୟ ମଧ୍ୟେ କପିଳ ଅଶ୍ରମ, (୪)
ମହର୍ଷିଙ୍କ ରୋଷାନଳେ ହୋଇ ଭସ୍ମୀଭୂତ
ମୁକତି ଲଭିଲେ ଯହିଁ ସାଗର ସନ୍ତତି
ଭଗୀରଥ ତପଃଫଳେ ଅବନୀପ୍ରବଣା
ତ୍ରିଲୋକପାବନୀ ଗଙ୍ଗା ପାବନ ପରଶେ;
ବର୍ଗଭୀମା ଅଧିଷ୍ଠିତ ମହାସ୍ୱର୍ଗୋପମା,
ଇନ୍ଦ୍ରଚାପ ଚାରୁ ପୋତ ପତାକା ମାଳିନୀ
ଗଙ୍ଗାମୁଖେ ପୋତଧାତ୍ରୀ ତାମ୍ରଲିପ୍ତପୁରୀ (୫)
ବିପଣିବୀଥିକା/ଯାର ସମୁଜ୍ଜ୍ୱଳ ସଦା
ଦ୍ୱୀପାନ୍ତରାଗତ ମଣି ମୌକ୍ତିକ ପ୍ରବାଳେ
ପଞ୍ଚାଳେ, କୋଶଳେ ପୁଣି ବିଦେହେ ମଗଧେ,

---

(୧) ରାଜଗିର—ବିହାରର ଅନ୍ତର୍ଗତ । ଜରାସନ୍ଧଙ୍କ ଗଡ଼ ଏହିଠାରେ ଥିବାର କିମ୍ବଦନ୍ତୀ ଅଛି । (୨) କାଳୀଘାଟ କଲିକତାର ନିକଟବର୍ତ୍ତୀ । (୩) ଲୌହିତ୍ୟ—ବ୍ରହ୍ମପୁତ୍ର, ପ୍ରାଗ୍‌ଜ୍ୟୋତିଷ—ଆସାମ, କାମାକ୍ଷାଦେବୀଙ୍କ ମନ୍ଦିର ଏହି ପ୍ରଦେଶରେ ଅବସ୍ଥିତ । ଅଭିଖ୍ୟା—ଶୋଭା । (୪) ଗଙ୍ଗାସାଗର ଦ୍ୱୀପ । (୫) ତାମ୍ରଲିପ୍ତର ଆଧୁନିକ ନାମ ତମଲୁକ । ଏଠାରେ ବର୍ଗଭୀମା ଦେବୀଙ୍କ ମନ୍ଦିର ପ୍ରତିଷ୍ଠିତ ।

Digitized by PPRACHIN, SOA

ଅଙ୍ଗେ, ବଙ୍ଗେ, ଏହିମତେ ନାନାସ୍ଥାନେ ଭ୍ରମି,
ନାନାତୀର୍ଥ ସେବି, ଶେଷରେ ଆସିଣ ମିଳିଲେ
ଉତ୍କଳର ପ୍ରାଚ୍ୟ ନୀଳ ପ୍ରାଚୀର ଆକୃତ (୧)
ନୀଳ ଫେନାକୁଳ ତୁଙ୍ଗ ତରଙ୍ଗ ଭଙ୍ଗୁର
ନୀଳାଚଳ ତଟେ, ଯହିଁ ଲୋଟେ ବାରିନିଧି (୨)
ଗମ୍ଭୀର ନିର୍ଘୋଷେ ଘୋଷି ବିଶ୍ୱ ଚତ୍ୱରରେ,
ଗର୍ଜଇ କି ନିଜ ବିଷଜ୍ୱାଳା ଅସହ୍ୟାଳେ
ଫଣୀନ୍ଦ୍ର, ବାସୁକି ଅବା ଫଣାଶ୍ରେଣୀ ତୋଳି !
ଅନନ୍ତ ନୀଳିମାମଧ୍ୟେ ସେ ଜଳକାନ୍ତାରେ (୩)
ଉଲ୍ଲୋଳ-କଲ୍ଲୋଳ ଲୀଳା ହେରି କୁତୂହଳେ
ବୀରବୃନ୍ଦ ସର୍ବେ ହେଲେ ମୁଗ୍ଧ ବିସ୍ମୟେ !
ସହସା ତରଙ୍ଗ ଭେଦି ଉଠିଲେ ଅଗ୍ରତେ
ଦିବ୍ୟ ବପୁଷ୍ମନ୍ତ ଜ୍ୱାଳମାଳା ବିଭୂଷିତ
ଈଶ୍ୱର ପୁରୁଷ ଏକ ସାଗର ଉଭାସି,
ଯା ଦର୍ଶନେ ବେଳାଭୂମିଚର ମୃଗଯୂଥେ
ଚକିତେ ମହାସନ୍ତ୍ରେ ପଳାଇଲେ ଦୂରେ !
ମଧ୍ୟମ ପାଣ୍ଡବେ ଚାହିଁ ସେ ଦିବ୍ୟପୁରୁଷ (୪)
ବୋଇଲେ, "ହେ ବୀର, ଚିହ୍ନି ପାରିଲଟି ମତେ
ଦହିଣ ଖାଣ୍ଡବ ବନ ବାସବ ପାଳିତ
ତୋଷି ମତେ ଲଭିଥିଲ ଦେବ ଦୈତ୍ୟାନରେ
ଦୁର୍ଜୟ ହେ ବତ୍ସ, ଏହି କୋଦଣ୍ଡ ଗାଣ୍ଡୀବ (୫)

---

(୧) ଓଡ଼ିଶାର ପୂର୍ବଦିଗସ୍ଥ ପ୍ରାଚୀର ରୂପୀ । (୨) ନୀଳାଚଳ—ଶ୍ରୀକ୍ଷେତ୍ର । (୩) କାନ୍ତାର—ଅରଣ୍ୟ । (୪) ଦିବ୍ୟପୁରୁଷ—ଦେବପୁରୁଷ । (୫) ଅଗ୍ନିଦେବ ଖାଣ୍ଡବ ଦହନ ସମୟରେ ଅର୍ଜୁନଙ୍କୁ ଗାଣ୍ଡୀବଧନୁ ଏବଂ ଅକ୍ଷୟତୂଣ ଦେଇଥିଲେ ।

Digitized by PPRACHIN, SOA

ଏ ଅକ୍ଷୟ ତୂଣଯୁଗ୍ମ କର୍ଣ୍ଣରୂପେ ଯାହା
କର୍ଣ୍ଣଧାର ରୂପେ ତୁମ୍ଭେ ଧରି ବରଭୁଜେ
ପାଣ୍ଡବର ଆଶା ତରୀ ପାର କଲ ହେଳେ
ଅକୂଳ ଅତଳ କୁରୁସମର ସାଗରେ
ପ୍ରଚେତା ଆୟୁଧାଗାରୁ ଅଚ୍ୟୁତ ଆଦେଶେ (୧)
ଆଣି ଦେଇଥିଲି ମୁହିଁ ଏହି ମହାଧନୁ
ତୂଣଦ୍ୱୟଙ୍କ ଯେଉଁ କାର୍ଯ୍ୟେ, ସାଙ୍ଗ ସେ ଭୂତଳେ
ଏବେ, ମହାବାହୁ, ଆଉ ରହିବ କି ଲାଗି
କରେ ଏହା ? ଉଚିତ ତା ଦେବାର ଫେରାଇ,
ଫିଙ୍ଗି ଦିଅ ପାରାବାରେ ତୂଣ ସଙ୍ଗେ ଧନୁ ।"
ଅଗ୍ନିଙ୍କି ନମିଲେ ସର୍ବେ ପୟୋଧି-ପୁଳିନେ,
ଅଗ୍ରଜ-ସଙ୍କେତେ ତହୁଁ ପାର୍ଥ-ମହାମତି
ଫିଙ୍ଗିଲେ ସାଗରେ ଧନୁ ବେନି ତୂଣ ସହ,
ଆଦରେ ନୀଳାମ୍ବୁ ସ୍ୱାମୀ ପ୍ରସାରି ଅମ୍ବୁରେ
ଉତ୍ତୁଙ୍ଗ ତରଙ୍ଗ ବାହୁ ନେଲେ ତା ତକ୍ଷଣେ,
ବୁଡ଼ିଗଲା ଜଳେ ସେହି ଆଗ୍ନିମୟ ଧନୁ,
ମିଶିଯାଏ ମେଘ ଯେହ୍ନେ ସିନ୍ଧୁ ବର୍ଣ୍ଣ ରଞ୍ଜିତ
ଚକ୍ରରୂପ, ତଡ଼ିଲ୍ଲତା-ଶିଞ୍ଜିନୀ-ସଂଯୁତ,
ବିନମ୍ରେ ଅନଳ ଦେବେ ବିନୟଭୂଷଣ
ପୁଚ୍ଛିଲେ ପାଣ୍ଡବପତି କୃତାଞ୍ଜଳିପୁଟେ
"ହେ ଦେବ, ଏ କେଉଁସ୍ଥଳୀ ? କି ଲାଗି ଏଠାବେ
ସିନ୍ଧୁଗର୍ଭେ ହୋଇଥିଲା ତୁମ୍ଭ ଆବିର୍ଭାବ ?"
ଉତ୍ତରିଲେ ଅଗ୍ନି "ଏହା ନୀଳାଚଳଧାମ,

(୧) ପ୍ରଚେତା—ବରୁଣ । ଅଚ୍ୟୁତ—ଶ୍ରୀକୃଷ୍ଣ ।

Digitized by PPRACHIN, SOA

ସୃଷ୍ଟିଦିନୁ ଅପ୍ରସିଦ୍ଧ ଥିଲା ମହୀତଳେ,
ମୁଁ ଥାଏ ଗୁପ୍ତେତ ଯେହ୍ନେ ଭସ୍ମ ଆବରଣେ,
ପ୍ରକାଶେ ଯେ ଦିନେ ହେଲା ଯଦୁବଂଶ ଧାମ,
ଚତୁର୍ଭୁଜ ରୂପ ପ୍ରଭୁ ଧରିଲେ ସେକାଳେ
ଯୋଗବଳେ ଯୋଗେଶ୍ୱର; ଯାଙ୍କ ଦେଖି ଭୟେ
ଭୂଭାର ହରଣ-ବ୍ରତ ହେଲେ ପୁଲକିତ,
ଏକମାତ୍ର ନିଜ କୁଳେ ପ୍ରଦ୍ୟୁମ୍ନେ ନରେଖି
ଜୀବତ, ଭକତବାକ୍ୟ ଫଳାଇବା ଲାଗି
ପେଷିଲେ ଅୟୁଧ ତାର ନିଧନ ମନାସି,
ସହାରି ଶମ୍ବରରିପୁ, ନ ବାହୁଡ଼ି ଆଉ (୧)
ଶ୍ରୀକରେ ତାଙ୍କର ଚକ୍ର, ଅମ୍ବର ଉଭାସି,
ଦିଗପାଳେ; ବ୍ୟୋମଚରେ ହୋଇ ନମସ୍କୃତ
ମହାବେଗେ ଆସିଲା ସେ ରତ୍ନାକର-କୁକ୍ଷି
ମୁକ୍ତମୂଳେ, ହୀନପ୍ରଭ କରି ଦିନନାଥେ,
(ହୀନାଂଶୁ ତାଙ୍କର ତେଜେ ସୁଧାଂଶୁ ହୋଇନ)
ଏହିଭଳି ଦୃଶ୍ୟ ଦୂରେ ଦେଖିଥିଲେ ଥରେ
ତ୍ରେତାଯୁଗେ ବିଶ୍ୱବାସୀ, ବିସ୍ମୟେ ପୂରିତ ।
ସୁଲକ୍ଷଣ-ସୀମନ୍ତ-ମଣି ସତୀ-ଶିରୋମଣି
(ପୂତ ହେଲା ବହ୍ନି ଯାଙ୍କ ଶୁଦ୍ଧଅଙ୍ଗ ପରଶେ (୨)
ଲଙ୍କାପୁରେ) ସୀତା ସଙ୍ଗେ ଯେବେ ରଘୁବର
ଅଯୋଧ୍ୟାକୁ ବିଜେକଲେ ଉଜ୍ଜ୍ୱଳ ପୁଷ୍ପକେ
ଲୀଳାମୃତେ, ଦିଗ୍‌ବଳୟ ସ୍ନାତ ପ୍ରଭାପୂରେ (୩)

---

(୧) ଶମ୍ବରରିପୁ—କାମଦେବ । (୨) ଲଙ୍କାରେ ସୀତାଦେବୀଙ୍କ ଅଗ୍ନି ପରୀକ୍ଷା ଏହି ଉକ୍ତିର ଲକ୍ଷ୍ୟ । (୩) ପ୍ରଭାର ସ୍ନାନରେ ଦିକ୍‌ବଳୟ ପ୍ଲାବିତ କରି ।

Digitized by PPRACHIN, SOA

ବିଶ୍ୱେ ତେଜଃସାର ଚକ୍ର ଆଲୋକେ ଯେକାଳେ
ଆଲୋକିତ ହେଲା କ୍ଷଣେ ସୃଷ୍ଟି ସୀମାପାରେ
ଆଦିମ-ତମସଗର୍ଭ, ତେଜୋରୂପୀ ଯେତେ (୧)
ରବି ଶଶୀ, ଗ୍ରହ, ତାର ମୂର୍ଦ୍ଧି ଆଦି କରି
ଅନ୍ଧ ହୋଇଗଲେ ସର୍ବେ ସେହି ତେଜଃପୂରେ,
ସ୍ଥି ଲିଙ୍ଗ ତାଙ୍କର ସିନା ମୂର୍ତ୍ତି, ରାଜନ୍ତି,
ପ୍ରହରଣ ଥିଲା ଅଗ୍ରେ ଅଶରୀରୀ-ବାଣୀ
ଦେବଲୋକେ, କୃଷ୍ଣ କରୁ ଅସି ଚକ୍ରବର
ସମ୍ଭବ ଯେ ଠାବେ ତହିଁ ହେବ କଳିଯୁଗେ
ଭକ୍ତଗ୍ରାହୀ କେଶବର ଭବ୍ୟ ଅବତାର,
ପତିତପାବନବାନା ଉଡ଼ିବ ଭୂତଳେ,
ଅବତରି ଏହି ଠାବେ ତେଜଃକୁଳପତି
ସୁଦର୍ଶନ ବିଶ୍ୱଦ୍ରୋହୀ ଦନୁଜ-ଧର୍ଷଣ
ସିନ୍ଧୁଗର୍ଭେ ପ୍ରବେଶିଲେ ସଙ୍କୋଚ ସ୍ୱବପୁ,
ତଥାପି ଉଜ୍ଜ୍ୱଳ ହୋଇ ବାରି ଅଧସ୍ତଳେ
ପ୍ଲାବିଲା ଭୂଖଣ୍ଡ ଖଣ୍ଡପ୍ରଳୟ ଆକାରେ,
ଘୋର ନାଦେ ଚହଟରେ ଉପୁଜାଇ ଶ୍ରାଦ୍ଧ,
ମହାଶ୍ୱାସେ ପାଣି ତହୁଁ ଉର୍ମ୍ମି ପାଶଯୋଗେ
ଫେଣ୍ଟାଇଲେ ନିଜ ସ୍ୱଜ୍ୟୋ, ରହିଗଲା ଯାହା
ହ୍ରଦାକାରେ ପରିଣତ ହେଲା ପରେ ଏବେ
ଜନ୍ମଭୂମେ, ସର, ପୁଣି ଚିଲିକା ଆଖ୍ୟାତ, (୨)

---

(୧) ଆଦିମ ତମସାଗର୍ଭ, ଆଦିମ ଅନ୍ଧକାର ଗହ୍ୱର । (୨) ପୁରୀର ଏକ ପାର୍ଶ୍ୱରେ ଚିଲିକା, ଅନ୍ୟପାର୍ଶ୍ୱରେ ସରହ୍ରଦ ଅବସ୍ଥିତ ।

Digitized by PPRACHIN, SOA

ମେଦିନୀ, ହେ ପୁଣ୍ୟଶ୍ଳୋକ, ଲୋକେ ଏହି ସ୍ଥଳୀ
ସିନ୍ଧୁତୀରେ ବୋଲନ୍ତିଛୁ ଚକ୍ରତୀର୍ଥ ନାମେ, (୧)
ସଚେତନ ହରିହେତି ଚକ୍ରେ ମଣ୍ଡିତ, (୨)
କାଶୀପାଦେ ଅବତୀର୍ଣ୍ଣ ହେଲେ ବିଶ୍ୱମ୍ଭର,
ପୂର୍ବବର୍ଣ୍ଣିମତେ ଯାଇ ରକ୍ଷିବେ ଶ୍ରୀପଦେ,
ଅସ୍ଥିକଳ ଖଟଣିରେ ଶ୍ରୀଅଙ୍ଗ ଗ୍ରମୂର
ଆଜ ମୁହିଁ. ତେଣୁ ହେଲ ତୁମ୍ଭ ସଙ୍ଗେ ଭେଟ,
ଭାଗ୍ୟଫଳେ ତୁମ୍ଭେ ଅପି ମିଳିଲ ଏଠାବେ
ପୁଣ୍ୟତମ ଏ ସୈକତ ବଣ୍ଡ ତଟରେ, (୩)
ବାଛି ନେଇଛନ୍ତି ଯାହା ନିଜେ ଲୀଳାମୟ,
ପୁଣି ମର୍ତ୍ତ୍ୟଲୀଳା ଲାଗି ଅଖିଳ ଭାରତେ,
ମର୍ତ୍ତ୍ୟଦଳେ ଶ୍ରେଷ୍ଠ ଯେହ୍ନେ ପ୍ରସୂନ ଲଳିତ
ଶ୍ରେଷ୍ଠ ଏ ଉତ୍କଳଭୂମି ଗୁଣେ ଗରୀୟସୀ
ଯାମ୍ୟେ (୪) ଯାର ଋଷିକୁଲ୍ୟା କପିଶା ଉତ୍ତରେ (୫)
ପଶ୍ଚିମେ ଭାର୍ଗବାଶ୍ରମ ମହେନ୍ଦ୍ର ଶିଙ୍ଖା, (୬)
କଲ୍ଲୋଲକୋଳାହଳମୟ ପୂର୍ବେ ପୟୋନିଧି,
ପ୍ରକୃତେ ଶ୍ରେଷ୍ଠ ତାର କେଶବ ନେହନେ,

---

(୧) ଚକ୍ରତୀର୍ଥ– ପୁରୀସ୍ଥିତ ସ୍ୱର୍ଗଦ୍ୱାରର ଅଦୂରବର୍ତ୍ତୀ । (୨), ହରିହେତି—ବିଷ୍ଣୁଙ୍କର ଆୟୁଧ । (୩) ସୈକତ—ଶ୍ରୀକ୍ଷେତ୍ର ସିକତାମୟ । (୪) ଯାମ୍ୟ—ଦକ୍ଷିଣଦିଗ । (୫) କପିଶା –ସୁବର୍ଣ୍ଣରେଖା । (୬) ଉତ୍କଳର ପଶ୍ଚିମାଂଶସ୍ଥିତ ପର୍ବତମାଳାର ସାଧାରଣ ନାମ ମହେନ୍ଦ୍ର । ମଞ୍ଜୁଷାଗଡ଼ ନିକଟରେ ଏହି ପର୍ବତମାଳାର ସର୍ବୋଚ୍ଚ ଶୃଙ୍ଗ ଅଦ୍ୟାପି ମହେନ୍ଦ୍ର ନାମରେ ଅଭିହିତ । ମହେନ୍ଦ୍ର ପର୍ବତରେ ଯମଦଗ୍ନିଙ୍କ ଆଶ୍ରମ ଥିଲା ।

Digitized by PPRACHIN, SOA

ଶ୍ରେଷ୍ଠ ଏ ନୀଳାଦ୍ରି ଧାମ ସମସ୍ତ ଉତ୍କଳେ, (୧)
ନିବସନ୍ତି ନାନା ସ୍ଥାନେ ଦେବଦେବୀ ଯେତେ
ଭାରତ, ଭାରତଖଣ୍ଡେ, ଅଛି ଏ ପ୍ରଦେଶେ
ବିହରିବେ ଠାବେ ଠାବେ ନିଜ ରୁଚିମତେ,
ଠୁଳ ହେବ ଅବଶେଷେ ପୁଣି ଏ ପୁଳିନେ,
ଅଖିଳ ଭାରତ-ତୀର୍ଥ ଭ୍ରମଣ ସୁକୃତ
ଲଭିବେ କଳିରେ ଲୋକେ ଏହି ସ୍ଥଳେ ଭ୍ରମି,
ମାନସୁ କଳୁଷ-ମଳ ଯିବ ଅପସରି,
ମୋ ଯୋଗେ ସ୍ୱର୍ଗର ପଥ, ଏ ତୀର୍ଥସେବନେ
ଫୁଟିବ ଅମଳ ଜ୍ଞାନ, ଲଭି ପୂର୍ଣ୍ଣାହୁତ
ହୋମକୁଣ୍ଡେ ଜଳିଉଠେ ଯଥା ମୋର ଶିଖା,
ଶଙ୍ଖ, ଚକ୍ର, ଗଦା, ପଦ୍ମ ହୋଇ ପ୍ରତିଷ୍ଠିତ
ଚାରି ସ୍ଥଳେ, ବିରାଜିବ ଚାରିକ୍ଷେତ୍ରବର ( ୨ )
ଏ ଉତ୍କଳ କଳେବର, ଏବେ ଦେବ ଦେଶେ
ଅଛିଲେଣି ସୁଦର୍ଶନ; ଶଙ୍ଖ, ପଦ୍ମ, ଗଦା,
ରଖିଛନ୍ତି ରତ୍ନାକର ମହାଦରେ ଯାହା ( ୩ )
ଦେବାଦେଶମତେ ମୁହିଁ ତାଙ୍କ ପାଶେ ଯାଇ,
ଆଣି, ହେ ପାଣ୍ଡୁବଂଶ ନନ୍ଦନ ଉତ୍କଳେ,
ଇଚ୍ଛା ଯେବେ, ମୋର ସଙ୍ଗେ ଚାଲ, ମହାବାହୁ"
ଦେଖିବ ଅଶେଷ ତୀର୍ଥ ଗିରି ନଦ-ନଦୀ ।
ଦେବଙ୍କ ବଚନେ, ସର୍ବେ ପ୍ରସନ୍ନମାନସେ

(୧) ନୀଳାଦ୍ରି ଧାମ—ଶ୍ରୀକ୍ଷେତ୍ର । (୨) ପୁରୀ—ଶଙ୍ଖକ୍ଷେତ୍ର, କୋଣାର୍କ—ପଦ୍ମକ୍ଷେତ୍ର, ଭୁବନେଶ୍ୱର—ଚକ୍ରକ୍ଷେତ୍ର, ଯାଜପୁର—ଗଦାକ୍ଷେତ୍ର । (୩) ରତ୍ନାକର—ଆରବ ସାଗର ।

Digitized by PPRACHIN, SOA

ଅବଗାହି ସିନ୍ଧୁଜଳେ ଉଦ୍ଦେଶ୍ୟ ନମିଲେ
ଭବ-ମର୍ତ୍ତ୍ୟ ବଇକୁଣ୍ଠ ସାଇଁ-ପଦ୍ମପାଦେ (୧)
ଅହୋରାତ୍ର ରହି ତହିଁ, ଭସିଲ ଯେକାଳେ
ଉଷାର ସୀମନ୍ତମଣି ତାରା ପାହ୍ନ/ନ୍ତୁଆ
ଝଟୀମୂଳେ ଉର୍ମିଶିରେ, [ଗ୍ଲୁଡ଼ିଦ୍ୱଏ ଯେବେ
ନନ ଫଳ ମହ୍ନଯାଳ ସିନ୍ଧୁ-ତୀରବାସୀ
ଚରିବାକୁ ବର୍ମ-ଶୂନ୍ୟ ବେଣାପୂର୍ଣ୍ଣ ପାଟେ
ପୁଣ୍ୟନୀର ଭାର୍ଗବୀର ] ନୀଳାଚଳ-ତେଜି (୨)
ଘ୍ଳଲେ ମହେନ୍ଦ୍ର-ମୁଣ୍ଡେ ଅନଳ-ସନ୍ତପ୍ତେ ।

———

(୧) ମର୍ତ୍ତ୍ୟବୈକୁଣ୍ଠ— ଶ୍ରୀକ୍ଷେତ୍ର । (୨) ଭାର୍ଗବୀ— ଶ୍ରୀକ୍ଷେତ୍ରର ଅଦୂରବାହିନୀ ନଦୀ । ପୂର୍ବକାଳରେ ଏହାର ତୀର ଦିଗନ୍ତବ୍ୟାପୀ ବେଣାପାଟରେ ପରିପୂର୍ଣ୍ଣ ଥିଲା ।

Digitized by PPRACHIN, SOA

# ତୃତୀୟ ସର୍ଗ

ହେମଗୌରବପୁ ଯୁବା ବିପ୍ରବେଶଧାରୀ
ଅଗ୍ନିଦଙ୍କେ ପଞ୍ଚଭାଇ ବାୟୁକୋଣେ ଯାଇ
ମହେନ୍ଦ୍ର-କାନ୍ତାର-ପଥେ, ମିଳିଲେ ବହନ (୧)
କଲ୍ଲୋଳିନୀ-କୂଳେଶ୍ୱରୀ- ମହାନଦୀକୂଳେ,
ଗଗନ-ପରଶୀ ବେନି ଦିଗେ ତୁଙ୍ଗଭୃଗୁ—
ସଙ୍କଟେ ସଙ୍କୋଚ ବପୁ, ବାହାରଇ ଯହିଁ
ପୁଣି ପୂର୍ବାକାରେ ସ୍ରୋତ ପୂର୍ବସିନ୍ଧୁଗାମୀ, (୨)
ବିଜନ-ଭୀଷଣ ସ୍ଥଳୀ, ବନଗଜବ୍ରଜ—
କଣ୍ଡୂଳ-କପୋଳ ପିଣ୍ଡ, ଘର୍ଷଣେ କମ୍ପିତ—
ଦ୍ରୁମାବଳୀ ଦେହୁ ଯହିଁ ଝରଇ ପ୍ରବାହେ
ସୁରଭି ଅରଣ୍ୟପୁଷ୍ପ ପୁଞ୍ଜ ପୁଞ୍ଜ ହୋଇ,
ବନଦେବୀଙ୍କର କସେ ଅର୍ଘ ଲୁଜାଞ୍ଜଳି ? (୩)
ଦିନ ଥାଉଁ ଥାଉଁ ତହିଁ ମହା ଶୈଳଛାୟା
ବ୍ୟାପି ଜଳେ, ସ୍ଥଳେ, ନଦୀପୁଳିନେ, କାନନେ,
ଉପୁଜାଏ ମନେ ସନ୍ଧ୍ୟା ଆଗମର ଭ୍ରମ,

---

(୧) ମହେନ୍ଦ୍ର କାନ୍ତାର ଓଡ଼ିଶା ଗଡ଼ଜାତର ମହାଅରଣ୍ୟ । (୨) ସାତକୋଶିଆ ଗଣ୍ଡର ପୂର୍ବସୀମା ବଡ଼ମୂଲ ଘାଟି ଦଶପଲ୍ଲା ରାଜ୍ୟର ଅନ୍ତର୍ଗତ । ସାତକୋଶିଆ ଗଣ୍ଡ ଅଂଶତଃ ଦଶପଲ୍ଲାରେ ଏବଂ ଅଂଶତଃ ବୌଦରେ ଅବସ୍ଥିତ । ଏପରି 'ଭୀମକାନ୍ତ' ଦୃଶ୍ୟ ଉତ୍କଳରେ ବିରଳ । ଏଠାରେ ମହାନଦୀ ଶଯ୍ୟା ଉଭୟ ପାର୍ଶ୍ୱସ୍ଥିତ ପର୍ବତମାଳାଦ୍ୱାରା ଅତ୍ୟନ୍ତ ସଙ୍କୁଚିତ । (୩) ଲୁଜାଞ୍ଜଳି—ଝଇଅଞ୍ଜଳି ।

Digitized by PPRACHIN, SOA

ଫୁଟଇ ଯେ ଭ୍ରମ ଦେଖି ଦୂରେ ପୃଷ୍ଠଦେଶେ
[ ଅସୁଖୀର ଅହୋ ପୂର୍ବସୁଖ-ସ୍ମୃତି ପରି ]
ଅସ୍ତାତପେ ଉଦ୍ଭାସିତ ତୁଙ୍ଗ ଶୃଙ୍ଗାବଳୀ, (୧)
ପର୍ଣ୍ଣ-ଶେଯେ ତହିଁ ନିଶି ଯାପି ବଟମୂଳେ (୨)
[ ଯେନାମେ ଅଦ୍ୟାପି ଟୁଲୀ ବୋଲଏ ଜଗତେ ]
ପଶିଲେ ଯାତ୍ରୀଏ ଦେହ୍ରି ବିକଟ ସଙ୍କଟେ;
ଛାୟା-ମୟ ଅନୁକ୍ଷଣେ ମୂର୍ତ୍ତି ବିହ୍ୱଳିରବେ,
କୁହେଳୀରେ ନୀଳବର୍ଣ୍ଣ ଭୃଗୁମାନ ଗିରି (୩)
ଧାଡ଼ିହୋଇ ବେନି ତଟେ, ଏକ ପରେ ଏକ
ଶିଖା ଟେକି କଲେ କି ଗଗନର ସୀମା ?
ଦିଗ୍‌ବାରଣ-ଶୁଣ୍ଡାକାରେ କାହିଁ ଅବା ନଗେ
ମିଶିଛି ତଟୀୟକେ ଆସି ଶ୍ୟାମଶୈଳନାସି, (୪)
ଛାୟାଲୋକେ ଶବଳିତ ହୋଇ ଠାବେଠାବେ
କାହିଁ କଳ କଳ ରବେ ଗିରି-ନିର୍ଝରଣୀ
[ ସୃଷ୍ଟି କାଳୁଁ ପଡ଼ି ନାହିଁ ସୌରକର ଯହିଁ ]
ସୁଚିକ୍କଣ କୃଷ୍ଣ ଶିଳା-ସୋପାନ-ଶ୍ରେଣୀରେ
ତମୋମୟ କନ୍ଦରରୁ ଆସଇ ଓହ୍ଲାଇ
ଅପ୍ରଗଳ୍‌ଭେ ଅପ୍ରଗଲ୍‌ଭେ ଦୀନ ସାଧୁ ଯଥା
ସାଧେ ପରହିତ ହୋଇ ବୀତସ୍ପୃହ ଯଶେ ।

---

(୧) ପଥିକର ପୃଷ୍ଠଭାଗରେ ଦୂରସ୍ଥିତ ଅସ୍ତକରୋଜ୍ଜ୍ୱଳ ଶୃଙ୍ଗ ଦର୍ଶନ ସହିତ ଅସୁଖୀ ବ୍ୟକ୍ତିର ପୂର୍ବସୁଖ ସ୍ମୃତିର ଉପମା । (୨) ବଡ଼ମୂଳଘାଟି—ଯାଜକୋଶିଆ ଗଡ଼ର ତୋରଣସ୍ୱରୂପ । ଏହିଠାରୁ ମହାନଦୀ ପୁନର୍ବାର ପୂର୍ବ ପ୍ରଶସ୍ତତା ଲଭିଅଛି । (୩) ଭୃଗୁମାନ— ଅତଟମୁକ୍ତ । (୪) ପର୍ବତ ନାସିକାକୃତି କୋଟୀ । ପର୍ବତନାସି ଦୂରରୁ ବିକଟ ହସ୍ତି-ଶୁଣ୍ଢ ପରି ଦିଶେ ।

Digitized by PPRACHIN, SOA

ନବ ଘାଟକକୁଞ୍ଜେ ଭିନ୍ନାଞ୍ଜନପ୍ରଭ—
ତିମିରେ ଆଚ୍ଛନ୍ନ ମହାଘୋର ଶୈଳଖୋଲେ (୧)
ଲୁଚି ଏକାକିନୀ କାହିଁ ଝୁରଇ କରୁଣେ
କୁରଙ୍ଗୀ କି ଦୁଃଖେ ତାହା ଜାଣେ ସେ ଦୁଃଖିନୀ
ଶୃଙ୍ଗ ଯାଏ ଶୈଳତଟେ ପଦେ ପଦେ ଉଭି
ବନଦେବୀ-ସୌଧୀକୃତ ବନସ୍ପତି ଶାଖେ
ମୁଖର ସେ କାନନ, ବୀଣାକ୍ୱଣୀ କଣ୍ଠରବେ
ଝଙ୍କୁରନ୍ତି ଅଷ୍ଟକାଳେ କଷ୍ଟଫେଡ଼ ଶୁଆ (୨)
ନଦୀକୂଳବନ୍ଧୁ, ଶ୍ୟାମା, ସାର, ଚଷାପୁଏ; (୩)
ଯାଉଁ ଯାଉଁ ସେହି ରମ୍ୟ ଭୀଷଣ ସଙ୍କଟେ
ବିସ୍ମୟେ ଉତ୍ଫୁଲ୍ଲନେତ୍ର ପାଣ୍ଡୁପୁତ୍ରେ ଦେଖି
ଦେବବୈଶ୍ୱାନର ତହୁଁ କହିଲେ ସସ୍ମିତେ,
"ହେ ସୁଜନ, ଦେଖ ଏଥି ବହନ୍ତି କେସନେ
ମହାନଦୀ-ନାମେ ପୂର୍ବସାଗର ଗାମିନୀ
ହରମୌଳିମାଳା ଦେବୀ ତ୍ରିସ୍ରୋତା ଜାହ୍ନବୀ,
ସୁକାନ୍ତ ମହର୍ଷି-ତପେ ପତିତପାବନୀ (୪)
ତୁଷ୍ଟ ହୋଇ ଏହି ମୁଖେ ଆସିଲେ ଯେକାଳେ
ଅର୍ଦ୍ଧପଥେ ତାଙ୍କ ଗତି ରୋଧିଲେ ଏଠାରେ
ନରବନ୍ଧୁ-ପ୍ରାଚୀରୀକୃତ ଏହି ମହାଗିରି,
ତହୁଁ କୂଳଶୀର୍ଣ୍ଣି ଋଷି ତୋଷି ତପୋବଳେ

---

(୧) ଭିନ୍ନାଞ୍ଜନପ୍ରଭ ତିମିର୍-ଦଳିତ କଜ୍ଜ୍ୱଳ ପରି କୃଷ୍ଣବର୍ଣ୍ଣ ଅନ୍ଧକାର (୨) କଷ୍ଟଫେଡ଼ୀୟମଧୁରନିନାଦ—ବନପକ୍ଷୀ-ବିଶେଷ । ବଙ୍ଗୀୟ ନାମ 'ବଉକଥା କଓ' । (୩) ନଦୀକୂଳବନ୍ଧୁ—ପକ୍ଷୀ-ବିଶେଷ । ଚଷାପୁଅ—ପକ୍ଷୀ-ବିଶେଷ । (୪) ସୁକାନ୍ତ ଋଷିଙ୍କ ତପଃପ୍ରଭାବରେ ଗଙ୍ଗା ମହାନଦୀ-ରୂପରେ ମଧ୍ୟଭାରତ ବର୍ଷରୁ ଉତ୍କଳକୁ ଆସିଥିବାର କିମ୍ବଦନ୍ତୀ ଅଛି ।

Digitized by PPRACHIN, SOA

ଏ ବର୍ତ୍ମ ଛେଦିବା ଲାଗି କଲେ ଅନୁରୋଧ,
ବଜ୍ରକରେ ଅବତରି ଏହି ଶୈଳଚୂଳେ,
ଛେଦି ଏ ଶୈଳ ବଜ୍ରୀ ରଚିଲେ କୌଶଳେ
ଉତ୍କଳର ମୁକ୍ତଦ୍ୱାରରୂପୀ ଏ ତୋରଣ
ସପ୍ତକୋଶ ବ୍ୟାପୀ, ଶୈଳ-କୁଞ୍ଜ ଅନ୍ଧାରିତ,
ଛିନ୍ନ ଶିଳାପୁଞ୍ଜ ଯାର ବକ୍ଷମି ଏକାଳେ
ନଦୀଶଯ୍ୟା ଉପୁଜାନ୍ତ ଅସଂଖ୍ୟ ପ୍ରପାତ (୧)
ଠାବେ ଠାବେ, କଳରବେ ଝୁରୁଛି ଅଟବୀ ।
ମହେନ୍ଦ୍ରର ଅଧିଷ୍ଠାନ ଜାନ୍ନ ଏ ଶିଙ୍ଗସ୍ଥ
ବୋଲାଏ ମହେନ୍ଦ୍ରନାମେ କୁଳାଚଳକୁଳେ, (୨)
ପରମ ପବିତ୍ର ଗିରି, ସେବନ୍ତି ଆଦରେ
ଦେବ ଋଷି ସିଦ୍ଧେ ଯାର ଶୃଙ୍ଗ ଅଗଣିତ,
ମେଘାସନ ମେଘାସନ ମନବା ବାଞ୍ଛିତ (୩)
ସୁଗ୍ରୀବରୁ ଚପଳାଲୟେ ନିରନ୍ତେ ଝଙ୍କାର,
ନିରନ୍ତେ ମୁଖର କେକୀକୁଳ-କେକାରବେ,
ପୂତବୈତରଣୀ-ସ୍ରୋତପ୍ରଭବ-ଗୋନାସା, (୪)
ଋଷିଦଳ ମଧ୍ୟେ ତଥି ଭାର୍ଗବମୁଖରୁ

---

(୧) ହାତକୋଣିଆର ପଶ୍ଚିମଭାଗରେ ମହାନଦୀର ଶଯ୍ୟା ବିଷମପୂର୍ଣ୍ଣ ପ୍ରସ୍ତରମୟ ହେବାରୁ ସ୍ରୋତରେ ନୌଗମନ ନିତାନ୍ତ ବିପଦସଙ୍କୁଳ । (୨) ମହେନ୍ଦ୍ର—ସପ୍ତକୁଳାଚଳର ଅନ୍ୟତର । (୩) ମେଘାସନଶୃଙ୍ଗ ମୟୂରଭଞ୍ଜରେ ଅବସ୍ଥିତ । ସ୍ୱଚ୍ଛନଦୀ ସାଲନ୍ଦୀ ଏହି ପର୍ବତରୁ ନିଃସୃତ । (୪) ଗୋନାସା—କେନ୍ଦୁଝରରେ ଅବସ୍ଥିତ । ବୈତରଣୀର ପ୍ରଭବସ୍ଥାନ, ଏହିଠାରେ ପର୍ବତ ଦେହରେ ଦେବନାଗରାକ୍ଷରେ 'ଆଦ୍ୟ ବୈତରଣୀ' ଏହି ଶବ୍ଦ ଅଙ୍କିତ ଅଛି । ଏହି ପର୍ବତର ପାଦଦେଶରେ ଋଷି ସଭା ନାମକ ପ୍ରସ୍ତରମଣ୍ଡିତ ସ୍ଥଳୀ ବୈତରଣୀର ସ୍ରୋତଦ୍ୱାରା ଧୌତ ହେଉଅଛି ।

Digitized by PPRACHIN, SOA

ଏରେ ପୂତତର ପୁଣ୍ୟଶ୍ଳୋକ-କଥାମୃତ,
ଗିରି ମାଲ୍ୟବନ୍ତ ଗିରି-ମାଳେ ମଧ୍ୟମଣି, (୧)
ସ୍ୱନେ ଶୁଭ୍ର-ନିର୍ଝର-ଉଚ୍ଛ୍ୱସ-ଧାର,
ମୈନାକ ପିନାକପାଣି-ପ୍ରିୟା-ପ୍ରିୟସ୍ଥଳୀ, (୨)
ଝର-ଉପତ୍ୟକାର, କପର୍ଦ୍ଦି ସେବିତ
କପିଳାସ ଅଭ୍ରଗର୍ଭେ ଅଭ୍ରଂକଷଗିରି, (୩)
ପଞ୍ଚଧାର ଜଳଦେବ-କେଳିମଞ୍ଚରୂପୀ, (୪)
କେତକ ନିକୁଞ୍ଜେ ଯା'ର ଝରଇ ଅଦୂରେ
ତପ୍ତ ପୂତ ପ୍ରସ୍ରବଣ ରୁଦ୍ର ଅଧିଷ୍ଠାନେ
ଏ ଆଦି ବିଶାଳ ଶୃଙ୍ଗକୁଳେ ବିଭ୍ରାଜିତ
ଉତ୍କଳ-କଳିଙ୍ଗ ବପୁ ମଣ୍ଡିଛି ଶିଖରୀ,
ମଧ୍ୟେ ଦ୍ୱିଖଣ୍ଡିତ ହୋଇ ଏହି ଦେବଖାତେ
ଅଗ୍ନିଙ୍କ ବଚନେ ସର୍ବେ ସେହି ପୂତନୀରେ

---

(୧) ମାଲ୍ୟବନ୍ତ—ପାଲଲହଡ଼ାର ମାଳଗିରି । ଏହାର ବିଶାଳ ନୀଳଦେହରେ ଶୁଭ୍ର ନିର୍ଝରଣୀ ଦୂରରୁ ଅତି ମନୋହର ଦିଶେ । ଏ ମାଲ୍ୟବନ୍ତ ରାମାୟଣର ମାଲ୍ୟବନ୍ତ ନୁହେଁ । ଆଧୁନିକ ବୈଜ୍ଞାନିକ ରେଖା ମଧ୍ୟରେ ମାଳଗିରି ସର୍ବଠାରୁ ଉଚ୍ଚ । (୨) ମୈନାକ— ରଣପୁର ଅନ୍ତର୍ଗତ ଦୁର୍ଗାଦେବୀ-ଅଧିଷ୍ଠିତ ପର୍ବତ । ରଣପୁରର ରାଜଧାନୀ ଏହି ପର୍ବତର ପାଦଦେଶରେ ଅବସ୍ଥିତ । (୩) କପିଳାସ—ଢେଙ୍କାନାଳର ଅନ୍ତର୍ଗତ । ହରିଣ ଏବଂ ଅଭ୍ର ସକାଶେ ଏହା ପ୍ରସିଦ୍ଧ । ଓଡ଼ିଶାର ଏହା ଗୋଟିଏ ପ୍ରସିଦ୍ଧ ଶୈବକ୍ଷେତ୍ର । (୪) ପଞ୍ଚଧାର—ଆଠମଲ୍ଲିକ ରାଜ୍ୟର ଅନ୍ତର୍ଗତ । ଏହାର ଅଦୂରରେ 'ଦେଉଳଝରି' ନାମକ ସୁପ୍ରସିଦ୍ଧ ତପ୍ତପ୍ରସ୍ରବଣ । ଗଡ଼ଜାତ ମଧ୍ୟରେ ଏହା ଗୋଟିଏ ଶିବକ୍ଷେତ୍ରରୂପେ ପ୍ରତିଷ୍ଠିତ । ଆଠମଲ୍ଲିକାଧୀଶ୍ୱର ମହାରାଜ ଶ୍ରୀମହେନ୍ଦ୍ର ଦେବଙ୍କ ପୂର୍ବପୁରୁଷମାନେ ଏଠାରେ ଅନେକ କୀର୍ତ୍ତିସ୍ଥାପନ କରିଥିଲେ ।

Digitized by PPRACHIN, SOA

ଅବଗାହି ଉତ୍କଣ୍ଠାଭରେ ଦେଲେ ଜଳାଞ୍ଜଳି
ନିତ୍ୟଲୋକେ, ସେ ବିକଟ ସଙ୍କଟୁ ବାହାର
ଚଳିଲେ ଗନ୍ତବ୍ୟ ପଥେ ପଶ୍ଚିମାଶା ମୁଖେ,
ଦେଖିଲେ କୌତୁକେ ପାନ୍ଥେ ସେ କାନ୍ତାର ପଥେ
ଅନନ୍ତ ବୈଚିତ୍ର୍ୟମୟୀ ଅରଣ୍ୟ-ପ୍ରକୃତି,
କି ଅବା ସେ ମାର୍ଗରେଖା ଶୋଭେ କି ଅରୁଣ
ସୀମନ୍ତେ ସିନ୍ଦୁରରେଖା ବନଲକ୍ଷ୍ମୀଙ୍କର ?
କାହିଁ ଊର୍ଦ୍ଧ୍ୱେ ଉଠି ମାର୍ଗ ମିଶିଛି ଆକାଶେ
(ଯହିଁ ଚକ୍ରାକାରେ ଦିଶେ ବନାବୃତ ଧରା
ଗିରିଦେଶେ, ବାରିଧି ପ୍ରାନ୍ତେ ଦିଗନ୍ତବିସ୍ତାରୀ)
କାହିଁ ଅବା ତଳେ ଯାଇ ମିଶିଛି ପାତାଳେ,
ଏହି ରୂପେ ଯାଉଁ ଯାଉଁ ନାନା ଦୃଶ୍ୟଚୟ
ପାନ୍ଥଙ୍କର ପଥେ ହେଲ ନୟନ-ଅତିଥି;
ନୀଳବନସ୍ଥଳୀ ମଧ୍ୟେ ଦୃଢ଼ପ୍ରସାରିତ
ସୈରିକଦେହେ କି ଶୁଭ୍ର ନଦୀବାଲୁରେଖା;
ନିରନ୍ଧ୍ରଛାୟା-ଦ୍ରୁମମଣ୍ଡା ଶ୍ୟାମ ମହାଟବୀ
ଅଦୃଶିଛି ମଗ୍ନ ନଭଃ ପଲ୍ଲବଚନ୍ଦ୍ରଲେ,
ଶୁଭି ନାହିଁ କେବେ ଯାର ନିସ୍ତବ୍ଧ ଗଗନେ
ସକ୍ଷିଦନ୍ତୁ କାଷ୍ଠଜୀବୀ-କୁଠାର ଶବଦ,
କାହିଁ ମୁଖରିତ ସ୍ଥଳୀ ଶ୍ୱାପଦ-ନିର୍ଘୋଷେ,
ପ୍ରତିଘୋଷେ ପ୍ରତିବାଣୀ ଦିଅଇ ଯା ଶୁଣି
ପ୍ରତିଧ୍ୱନି ଗିରିଗୁହା-କୋଡ-ପ୍ରଣୟିନୀ,
ଶିଳାଶଯ୍ୟା-ପ୍ରବାହିଣୀ ଶୈଳ-ସ୍ରୋତସ୍ୱତୀ,
ଉପଲେ ସ୍ଖଳିତ ହୋଇ ଯାର ବାରିଧାର
ମିଶାଏ ଝର୍ଝର ରବ ଘୋର ଝିଲ୍ଲୀରବେ
ପ୍ରପାତ-ମଣ୍ଡିତ ଇନ୍ଦ୍ରକୋଦଣ୍ଡ-କଣ୍ଠେ,

Digitized by PPRACHIN, SOA

ବାତେ ଫରଫର ରୂପାଜରିର ପାଛୁଡ଼ା—
ପଶ୍ଚେ ଯା ଶୋହେ ସର୍ଣ୍ଣଶ୍ୟାମଶୈଳ ଦେହେ,
ଭୃଗୁରୁ ଭୃଗୁକୁ ଡେଇଁ ଗମ୍ଭୀର ଗର୍ଜନେ,
ଗିରି-ଦରପଣରୂପୀ ଗିରି-ପାଦଦେଶେ
ସ୍ୱଚ୍ଛହ୍ରଦ ଅଳଙ୍କୃତ ଫୁଲ୍ଲ-କୋକନଦେ,
ସ୍ନିଗ୍ଧଗନ୍ଧ-ସୌଗନ୍ଧିକେ, କୁମୁଦେ, କହ୍ଲାରେ,
ସରାଳି, ଗାଙ୍ଗୋଇ, ହଂସ, କୋକ, ପାଣିକୁଆ—
ଆଦି ଜଳବିହଙ୍ଗମେ ସଦା ଝଙ୍କାରିତ,
ଶଙ୍କାହୀନେ ଯୁଥେ ଯୁଥେ ଚରନ୍ତି ଯା ତୀରେ
ଶୃଙ୍ଗଧର କୃଷ୍ଣସାର ସଙ୍ଗେ କୁରଙ୍ଗିନୀ
ଧରଣୀ ସୀମାନ୍ତ ସେତୁ ସମ ଟଙ୍କଭୂମି (୧)
ଦିଗନ୍ତେ ଶ୍ୟାମାଙ୍ଗମାନ ବିଶାଳ ଆବେଗେ,
ଦନ୍ତୁର ରେଖାରେ ଯାର ପୃଷ୍ଠେ ଦିଗପଟେ
ତୋଳିଛନ୍ତି ନୀଳଶିଖା ଦୂର ଗିରିମାଳା
ଗଜା ବଉଦର ଭ୍ରମ ଦେଉ ଉପୁଜାଇ, (୨)
କାନ୍ଧେ ଅବା ଶିଶୁ ଶୈଳ ଆବରେ ଉଢ଼ାଳେ
ପୃଷ୍ଠେ ସୁବିଶାଳ ଗିରି, ଜୀବନେ ଯେସନ
ଉପସ୍ଥିତ ଦୁଃଖେ, ଆହା ଆବରେ ନୟନୁ
ଭବ ଘୋରତର-ଦୁଃଖ-କଜ୍ଜଳ ମୂରତି,

---

(୧) ଟଙ୍କଭୂମି—ଟାଙ୍ଗି । ଗୁଲ୍ମଶ୍ୟାମଳ ଟାଙ୍ଗି ଦୂରର ଦୀର୍ଘହେତୁ ପରି ଦିଶେ । ଖୋର୍ଦ୍ଧା ଅଞ୍ଚଳରେ ଏଭଳି ଅନେକ ଟାଙ୍ଗି ଦେଖାଯାଏ ।
(୨) ଗଜାବଉଦ—ମେଘାଙ୍କୁର । ବର୍ଷାର ଆଗମସୂଚକ ଦିଗ୍‌ବଳୟଭେଦୀ ବୃକ୍ଷାକାର ନୀଳମେଘ ।

Digitized by PPRACHIN, SOA

ତୃଣାଲାଗି ହତ ହୋଇ ପୁଳନ୍ଦ କୁଠାରେ (୧)
ଧାନହୀନବେଶେ କାହିଁ ଶୈଳତଟେ ଉଭା
ସୁବିଶାଳ ଶାଳତରୁ କଙ୍କାଳର ମାଳା,
ବାତେ ତରଙ୍ଗିତ ଶସ୍ୟକେଦାର ଶ୍ୟାମଳ,
ମଧ୍ୟେ ଶୋଭେ ମଞ୍ଚ, ଯହିଁ ଜଗ ନିଶିଯୋଗେ
ଶାଳଗୋପେ ଜରଜର ନିଦାରୁଣ ଶୀତେ (୨)
ବରାହ, ଶମ୍ବର, କପି ଆଦି [illegible]
ନବଙ୍କୁ ତଡ଼ନ୍ତି କ୍ଷେତ୍ରୁ ବିକଟ କୁହାଟେ,
ଧଶର କମାଣଧର କାହିଁ ଗୋପଶିଶୁ
ଜଗିଛନ୍ତି ଧେନୁପଲ ବିଜନ ପ୍ରାନ୍ତରେ
କାହିଁ ଶସ୍ୟ କାଟୁ କାଟୁ ଥେବେ କୃଷୀବଳେ
ଭାଲେ କର ଦେଇ ଦୂରୁଁ ଦେଖନ୍ତି କୌତୁକେ
ମୁଣ୍ଡାଇ ଇନ୍ଧନ ବୋଝ କାହିଁ ଅବା ବନୁ
ଗୁଞ୍ଜାମାଳେ ବିମଣ୍ଡିତା କବ୍ତ ସୁନ୍ଦରୀ (୩)
ଆସୁଛନ୍ତି ଦଳେ ଦଳେ ଆଳାପି ମଧୁରେ,
ଏହିରୂପେ ନାନା ଦେଶ, ବନ, ଜନପଦ—
ତୀର୍ଥାଶ୍ରମଗିରିପୂର୍ଣ୍ଣ ମହାନଦୀ ଦ୍ରୋଣୀ (୪)
କ୍ରମେ କ୍ରମେ ଅତିକ୍ରମି ପ୍ରବେଶିଲେ ବୀରେ

---

(୧) ପୁଳନ୍ଦ – ବନ୍ୟଜାତି । ତୃଣା ପ୍ରାପ୍ତି ନିମନ୍ତେ କନ୍ଧ, ଭୂୟାଁ ପ୍ରଭୃତି ଜାତିମାନେ ଶାଳତରୁର ମୂଳଦେଶରେ ଚକ୍ରାକାରରେ ଛିକ୍ କାଟିଦେଇ ଅଗ୍ନି ଜାଳିଦିଅନ୍ତି । ଏହି ସାମାନ୍ୟ ଉପାୟଦ୍ୱାରା ବୃହତ୍ ଶାଳଗଛମାନ ଅତି ଅଳ୍ପ ସମୟରେ ଝାଉଁଳି ମରିଯାନ୍ତି । ମହାରଣ୍ୟମାନଙ୍କରେ ଏହିପରି ମୃତ ଶାଳଗଛ ଅନେକ ଦେଖାଯାଏ । (୨) ଶାଳଗୋପ—ଯେଉଁମାନେ କ୍ଷେତ୍ରରେ ଶସ୍ୟ ଜଗନ୍ତି । (୩) ଗୁଞ୍ଜାହାର ଭରଣା – ବନ୍ୟନାରୀ । (୪) ଦ୍ରୋଣୀ—ଉପତ୍ୟକା ।

Digitized by PPRACHIN, SOA

ଦକ୍ଷିଣାପଥର ଦ୍ୱାର-ଦେହଳୀ ରୂପିଣୀ
ମାଳଭୂମି, ତିନ ମହାସ୍ରୋତର ପ୍ରସୂତା (୧)
ଯହିଁର ପ୍ରସ୍ରବଣେ ମୂର୍ତ୍ତ ଯହୁଁ ପ୍ରବାହିତ—
ଅସଂଖ୍ୟ ଶୈଳ ସ୍ରୋତୁଁ ବାରି-କର ଘେନି
ଉତ୍ତରେ ବହନ୍ତି ଶୋଣ ମିଶେ ଗଙ୍ଗାଦେହେ
ପଶ୍ଚିମେ ବହଇ ରେବା ପୂର୍ବ ମହାନଦୀ (୨)
ସ୍ଥାନେ ସ୍ଥାନେ ଗିରିପାଦେ କଳ୍ପିତ ଗହ୍ୱରେ
( ତରୁଦେହେ ପୁଞ୍ଜୀଭୂତ ପାରାବତ ଛବି )
ଉଠୁଛି ତ୍ରେତାଗ୍ନି ଧୂମ୍ର ତପସ୍ୱୀ ଆଶ୍ରମେ, (୩)
ଦୂର୍ବାଦଳେ, ଦେବାର୍ଚ୍ଚନକୁସୁମେ, ଅକ୍ଷତେ,
ସ୍ଥଳେ ସ୍ଥଳେ ବର୍ଚ୍ଚୁରିତ କମ୍ପଗା-ସୈକତ
ବିଚରନ୍ତି ମୃଗଶିଶୁ ନିରୁଦ୍‌ବେଗେ ବନେ
ଦଳେ ଦଳେ, କୁଶାଙ୍କୁର-କବଳ-ଲାଳସୀ,
ବିକ୍ଷିପ୍ତ ଠାବେ ଠାବେ ଗ୍ରନ୍ଥୀତରୁମୂଳେ
ଶିଳାଖଣ୍ଡ, ମସୃଣିତ ଇଙ୍ଗୁଦ-ତଇଳେ; (୪)
କାହିଁ ବନସ୍ପତିଡାଳେ ବାଳାତପ ପ୍ରତି
ଜଳାର୍ଦ୍ର ବଲ୍‌କଳ ଦୋଳେ ମୃଦୁ ବନବାତେ,
ପାନ୍ଥେ କୌତୂହଳୀ ଜାଣି ଦେବ ବାଘବସ୍ତୁ
କହନ୍ତେ ସମ୍ବୋଧି ତହୁଁ—"ମହାନଦୀ ଏହୁ",
ମହିମା ଏହାରି ଜାଣି ବହନ୍ତି ଏ ଦେଶେ
ନାନାସ୍ଥାନେ ଋଷିବୃନ୍ଦ, ତ୍ରେତାରେ ଏ ପଥେ

---

(୧) ମାଳଭୂମି—ଉଚ୍ଚଭୂମି । (୨) ରେବା—ନର୍ମଦା । ରେବା, ମହାନଦୀ ଏବଂ ଶୋଣ ଏମାନେ ଏକ ମାଳଭୂମିରୁ ଭିନ୍ନ ଭିନ୍ନ ଦିଗରେ ପ୍ରବାହିତ । (୩) ତ୍ରେତାଗ୍ନି ଦକ୍ଷିଣ, ଗାର୍ହପତ୍ୟ ଓ ଆହବନୀୟ ଏହି ତିନ ଅଗ୍ନି । (୪) ତପସ୍ୱୀମାନେ କଷ୍ଟରେ ଇଙ୍ଗୁଦୀ ତେଲ ବ୍ୟବହାର କରୁଥିଲେ ।

Digitized by PPRACHIN, SOA

ଚିତ୍ରକୂଟୁଁ ପଞ୍ଚବଟୀ ବନେ ନେବା କାଳେ,
ଯନ୍ତ୍ରୋଳ ରଚି ଏଥି ଥିଲେ ଦାଶରଥି, (୧)
ପ୍ରସ୍ତରେ ଅଙ୍କିତ ତାଙ୍କ ପଦାଙ୍କ ଏ ବନେ
ବନପୁଷ୍ପାଞ୍ଜଳି ଦେଇ ପୂଜନ୍ତି କିରାତେ
ଶିଖି-ପୁଚ୍ଛ ତାଳବୃନ୍ତ ଢାଳି ଭକ୍ତିଭାବେ,
ଦାଶରଥି-ଶରେ ହତ ହୋଇ ଏହି ସ୍ଥଳେ
ଲଭିଣ ବିରାଧ ମୁକ୍ତି ଗଲା ଦିବ୍ୟଲୋକେ, (୨)
ଅଶୋକ, ମାଧବୀ ନାଗ-କେଶର ବାନ୍ଧି-
ଦୋଳନେ ଦୋଳନ୍ତି ଏଥି ନିଭୃତେ ଅପ୍ସରା
ମଧୁମାସେ, ରାମାୟଣ ଗାଇ ମଧୁମାସେ
ଫାଗୁଖେଳ ରଚି ବନ-ପ୍ରସୂନ-ପରାଗେ,
ନବକିଶଳୟେ, ଦେଖ ବିରାଜେ କେମନେ,
ଚୌଦିଗେ ଅରଣ୍ୟଭୂମି ଦିଗ୍‌ବଳୟ ଯାଏ,
ମୈଥିଳୀ ସୁନ୍ଦରୀ ଯେବେ ତୋଳୁଥିଲେ ଏଥି
ବନପୁଷ୍ପ, ଝରି ତାଙ୍କ ଶ୍ରୀକରୁ ଅଳତା
ରଞ୍ଜିଲା କି ତରୁଲତା ଏ ମଞ୍ଜୁଳ ରାଗେ ?
ତାଙ୍କ ବରେ ଯେହ୍ନ କାନ୍ତି ଅଛି ମୋତେ ମନା
ଦାବାନଳରୂପେ ଏଥି ଦହିବା ପାଇଁ,
ଦକ୍ଷାବକ୍ଷ ମୈଥିଳୀର ଶ୍ରୀହସ୍ତ-ଲାଳିତ
ଅଦ୍ୟାପି ଏ ବନେ ଛନ୍ତି ବୃଦ୍ଧ କୃଷ୍ଣସାର
କରୁଣାର୍ଦ୍ର, ଶୁଣି ଯେବେ ଜଳଦ ଆଗମେ
ସୁଗମ୍ଭୀର ଘନଘୋଷ ସ୍ମରନ୍ତି-ବିଷାଦେ

---

(୧) ଚିତ୍ରକୂଟ— ପ୍ରୟାଗର ଦକ୍ଷିଣରେ ଅବସ୍ଥିତ । ମନ୍ଦାକିନୀ ନଦୀ ଏହାରେ ପ୍ରବାହିତ । ବନଯାତ୍ରା ସମୟରେ ରାମଚନ୍ଦ୍ର ଚିତ୍ରକୂଟରେ ଅବସ୍ଥାନ କରିଥିଲେ ।
(୨) ବିରାଧବଧ ବୃତ୍ତାନ୍ତ ରାମାୟଣରେ ଅନୁସନ୍ଧେୟ ।

Digitized by PPRACHIN, SOA

ବ୍ରହ୍ମାଣ୍ଡବିବରବ୍ୟାପୀ କୋଦଣ୍ଡଟଙ୍କାରେ
ଲଙ୍କାପତି-ଅରାତିର, ତୃଣାହାର ତେଜି
ନିର୍ନିମେଷ ଏକଧ୍ୟାନେ 'ସୁପ୍ତାନ୍ତ' ଲୋତକ ।
ଏହି କଥା ଶୁଣି ତହୁଁ ପଞ୍ଚ ପାଣ୍ଡୁସୁତ
ପାଞ୍ଚାଳୀ ସହିତେ ଭ୍ରମି ଆଶ୍ରମେ ଆଶ୍ରମେ
ଋଷି-ଋଷିପତ୍ନୀପଦ ବନ୍ଦିଲେ ଆଦରେ,
ତହୁଁ ପଥ ଅତିବାହି, ରଖି ବାମଭାଗେ
ନିଷଧ, ବିଦର୍ଭଦେଶ, ଚଳିଲେ ପଶ୍ଚିମେ, (୧)
ଲଭି ପଥେ ଇନ୍ଦ୍ରାଦ୍ରି, ଯାର ତଟ ବନେ (୨)
ଭବାନୀଭବନ ଶୋଭେ ମହାଶକ୍ତି-ପୀଠେ;
କେତେଦିନ ଅନ୍ତେ ପାନ୍ଥେ ମିଳିଲେ ପ୍ରଦୋଷେ
ତାପ୍ତୀ-ତଟିନୀ-ତୀରେ ଅଗ୍ନିଦେବ ସଦ୍ମ, (୩)
ତପତୀର ପୂତସ୍ରୋତେ ତର୍ପଣ ବଢ଼ାଇ
ବନ୍ଦନ୍ତେ ପାଣ୍ଡବେ ଦେବ ବୈଶ୍ୱାନର ତହୁଁ
ବୋଇଲେ ବାରୁଣୀଭାଗେ ଅଙ୍ଗୁଳି ନିର୍ଦ୍ଦେଶି
"ସନ୍ଧ୍ୟାରେ ଅରୁଣ ଏହି ବାରୁଣୀ ଅମ୍ବରେ
ସନ୍ଧ୍ୟାତାରା ଚୁମ୍ବେ ଯାର ନୀଳୋଚ୍ଚ ଶିଖା
ବୋଲାଏ ସହ୍ୟାଦ୍ରି ଏହି ଅଚଳ-ସମାଜେ (୪)

---

(୧) ନିଷଧ ଏବଂ ବିଦର୍ଭଦେଶ ମଧ୍ୟ ଭାରତବର୍ଷରେ ଅବସ୍ଥିତ ଥିଲା । ବିଦର୍ଭର ଆଧୁନିକ ନାମ ବେରାର । (୨) ଇନ୍ଦ୍ରାଦ୍ରି—ଅନ୍ୟ ନାମ ସାତପୁରା ପର୍ବତ । ଏହି ପର୍ବତର ଉପତ୍ୟକାରେ ଖଣ୍ଡୱା ନାମକ ସ୍ଥାନରେ ଭବାନୀ-ଦେବୀଙ୍କର ମନ୍ଦିର ଅବସ୍ଥିତ । ଖଣ୍ଡୱା ଭାରତବର୍ଷର ଅନ୍ୟତମ ଶକ୍ତିପୀଠ । ମଧ୍ୟଭାରତବର୍ଷ 'ଠଗ'ମାନେ ଏହି ଦେବୀଙ୍କର ଉପାସକ ଥିଲେ । (୩) ତପତୀ—ଏହି ନଦୀ ପଶ୍ଚିମ ମୁଖରେ ପ୍ରବାହିତ ହୋଇ ଆରବ ସାଗରରେ ପତିତ ହୋଇଅଛି । (୪) ସହ୍ୟାଦ୍ରି—ପଶ୍ଚିମଘାଟ ପର୍ବତ । ଗୋଦାବରୀ ପ୍ରଭୃତି ନଦୀ ଏହି ପର୍ବତରୁ ପ୍ରବାହିତା ।

Digitized by PPRACHIN, SOA

ମହା ପ୍ରସ୍ରବଣ ଗିରି, ଦକ୍ଷିଣାପଥର
ପଶ୍ଚିମ ପ୍ରାଚୀରରୂପେ ଡ଼କେ ମହୀତଳେ,
ବିସ୍ତୃତ ଦକ୍ଷିଣେ ଏହି ହେତୁବନ୍ଧ ଯାଏ,
ଏହା ଦେହୁଁ ବହି ଭିନ୍ନ ମହାପ୍ରବାହିଣୀ
ପୂର୍ବେ ଯାଇ ମିଶିଛନ୍ତି ପୂର୍ବପାର୍‌ବାରେ
ଜନସ୍ଥାନ ଦ୍ରୁମରାଜି—ଧାତ୍ରୀ ସ୍ୱରୂପିଣୀ (୧)
ସରିଦ୍‌ବରା ଗୋଦାବରୀ, କୃଷ୍ଣା କୃଷ୍ଣ-ବେଣୀ (୨)
ମଳୟ-ବଳସ୍ୱରୂପା ବିମଳା କାବେରୀ, (୩)
ଚନ୍ଦନକାନନ ଯାର ସ୍ମରୁ ଶିରଭୂମେ
ସମୁଜ୍ଜ୍ୱଳ, କୁମ୍ଭଯୋନିମୁନି-ପ୍ରଣୟିନୀ
ସତୀଶିରୋମଣି ଧନ୍ୟା ଲୋପାମୁଦ୍ରା ରୂପେ,
ଏହି ଗିରି ପ୍ରାନ୍ତବନୁ ନେଇଥିଲା ହରି
ରକ୍ଷୋଶ୍ୱର୍ଯ୍ୟ-ବନ୍ୟବହ୍ନି-ଦାବାନଳଶିଖା—
ସୀତାଙ୍କୁ ଯେଉଁଠାରେ ମିଳି ରାମେ ରାମାନୁଜେ
ତ୍ରିଦଶବୀର୍ଯ୍ୟନନ୍ଦନ-ନୈକଶେଷ ବଳୀ, (୪)
ସୁଗ୍ରୀବପ୍ରମୁଖ ପଞ୍ଚବୀର-ଅଧିଷ୍ଠିତ

---

(୧) ଜନସ୍ଥାନ—ଦଣ୍ଡକାରଣ୍ୟର ଅଂଶ-ବିଶେଷ । ଗୋଦାବରୀ ଜନସ୍ଥାନ ମଧ୍ୟରେ ପ୍ରବାହିତ । (୨) କୃଷ୍ଣବେଣୀ—ସ୍ୱନାମପ୍ରସିଦ୍ଧ ନଦୀ, ପୂର୍ବମୁଖରେ ପ୍ରବାହିତ ହୋଇ ମହୋଦଧିରେ ପତିତ ହୋଇଛି । ଆଧୁନିକ ନାମ କୃଷ୍ଣା । (୩) ମଳୟ ପର୍ବତର ପାଦଦେଶରେ ପ୍ରବାହିତା କାବେରୀ କୂଳରେ ଅଗସ୍ତ୍ୟାଶ୍ରମ ଥିଲା । ଲୋପାମୁଦ୍ରା ଅଗସ୍ତ୍ୟପତ୍ନୀ । ମଳୟପର୍ବତ ଚନ୍ଦନ ନିମନ୍ତେ ପ୍ରସିଦ୍ଧ । ଅଗସ୍ତ୍ୟ କଳସରୁ ଜାତ ବୋଲି ପୌରାଣିକ କିମ୍ବଦନ୍ତୀ ଅଛି । (୪) ଋକ୍ଷପୁତ୍ର ଲଙ୍କେଶ୍ୱର ଦେବବୀର୍ଯ୍ୟର ନିକଷପ୍ରାପ୍ତ ଥିଲେ ।

Digitized by PPRACHIN, SOA

ଏହି ଗିରି-ପଦସ୍ଥିତ ଶୈଳ ଋଷ୍ୟମୂକେ (୧)
ଫିଙ୍ଗିଥିଲେ ଅଙ୍ଗୁ ଦେବୀ ସନ୍ଦର୍ଶନ ଲାଗି,
ସେକାଳେ ଆକାଶଗାମୀ ପୁଷ୍ପକବିମାନୁ
ତଡ଼ିଲ୍ଲତା ତାରାପୁଞ୍ଜଗଞ୍ଜୀ ବାସଭୂଷା,
ଲେଉଟନ୍ତି ଏ ଗିରିପାଦେ ନୀଳ ରତ୍ନାକର, (୨)
ଯିବ ନିଜ କାର୍ଯ୍ୟେ ମୂର୍ଦ୍ଧ୍ନି ତାଙ୍କର ଚରଣେ,
ପ୍ରଭାତେ ବାନ୍ଧବ୍ୟ-ମୁଖେ ଦ୍ୱାରବତୀପୁରେ
ଯିବ ତୁମ୍ଭେ ଏହିଠାରୁ, କାଲିଠାରୁ ଆଉ
ତୁମ୍ଭ ସଙ୍ଗେ ଭେଟ ମୋର ନୋହିବ ମରତେ
ଦ୍ୱାପରର ଶେଷ ଆଜି, ଏହି ନିଶାଯୋଗ
ଓହ୍ଲାଇବେ ଦଳବଳେ କଳି ଭବଧାମେ,
ଲଭିବ କଳିରେ ଦେବ-ମାନବର ଭେଟ,
ଇଚ୍ଛା ଯେବେ, ମୋର ସଙ୍ଗେ ଚାଲ କୁରୁମଣି
ଏହି ଶୈଳଶୃଙ୍ଗେ ବସି ଦେଖିବ କୌତୁକେ,
ଭବେ କଳି ଅବତାର ମୋର ଦିବ୍ୟାଲୋକେ
ଦନ୍ତୁରଶୋଜ୍ଜ୍ୱଳ ଏକା ତୁମ୍ଭର ଲୋଚନେ
ସହିବ ସେ ଦିବ୍ୟଜ୍ୟୋତି ଚାଲ ବେଗକରି ।"

---

(୧) ସହ୍ୟାଦ୍ରିର ପାଦପର୍ବତ ପମ୍ପାସରୋବରର ସନ୍ନିହିତ । ସୁଗ୍ରୀବାଦି ପଞ୍ଚମହାବୀର ବାଳୀଙ୍କ ଭୟରେ ଏହି ପର୍ବତରେ ଆଶ୍ରୟ ଗ୍ରହଣ କରିଥିଲେ ।
(୨) ରତ୍ନାକର—ଆରବ ସାଗର ।

Digitized by PPRACHIN, SOA

# ଚତୁର୍ଥ ସର୍ଗ

ସହ୍ୟାଦ୍ରି-ଶିଖରେ ବସି, ଦିବ୍ୟାଲୋକଯୋଗେ
ଦେଖିଲେ ପାଣ୍ଡବଗଣ ଅନଳ-ପ୍ରସାଦେ
ବିସ୍ମୟେ ଅଦ୍ଭୁତ ଦୃଶ୍ୟ, ଦିଶିଲା ଆକାଶେ
ତାରକାଗୁମ୍ଫିତ ଶୁଭ୍ର-ଚନ୍ଦ୍ରାତପ ତଳେ
ସ୍ୱର୍ଣ୍ଣମେରୁ ଦେବସଭା, ବିରାଜନ୍ତି ତହିଁ
ଦେବଗଣ, ଚିନ୍ତାମଗ୍ନ ସର୍ବେ ଏକମନେ,
ଚନ୍ଦ୍ରାକାରେ ବେଢ଼ିଅଛି ସର୍ବ ଦେବଦେବେ
ସୁନ୍ଦର ପ୍ରଭାମଣ୍ଡଳ, ବିଧୁଙ୍କ ଯେସନେ
ବେଢ଼ଇ ବିବିଧ ବର୍ଣ୍ଣେ ଉଜ୍ଜ୍ୱଳ ପରିଧି
ନିଶାକାଳେ, ବରଷାର ଆଗମସୂଚକ (୧)
ଏକ ଏକ କରି ଦେବ ସୁବର୍ଣ୍ଣଦୀଧିତି (୨)
ପୌରବେ ଚାହାଁଇ ଦେଇ କହିଲେ ଏସନ (୩)
"ତୁଷାର ଧବଳକାନ୍ତି, ଦେଖ ସିଂହାସନେ
ବିରାଜନ୍ତି ' ଧର୍ମଦେବ' ଅମଳବସନେ,
କରେ ଜ୍ୟୋତ୍ସ୍ନାଶୁଭ୍ର ଦଣ୍ଡ, ବଦନମଣ୍ଡଳେ
ବିରାଜେ ଅପୂର୍ବ ଜ୍ୟୋତି ପ୍ରଶାନ୍ତ ପାବନ,
ସ୍ଫୀତବକ୍ଷ ଅନୁଚର ଧର୍ମଙ୍କ ସମ୍ମୁରେ
ଉଭା ଯେହୁ, ସବେ ହେନ୍ତି 'ଦାନବ' ଆଖ୍ୟାତ

(୧) ଚନ୍ଦ୍ରମଣ୍ଡଳ—ବର୍ଷାଗମର ସୂଚକ । (୨) ସୁବର୍ଣ୍ଣଦୀଧିତି—ଅଗ୍ନି ।
(୩) ପୌରବ —ଯୁଧିଷ୍ଠିର ।

Digitized by PPRACHIN, SOA

ଧର୍ମପାଶେ 'ସତ୍ୟ' ମହାତେଜସ୍ୱୀ ନର୍ଷିକ,
ସ୍ୱଳ୍ପବ୍ରତ ଦିଶେ ଯାଙ୍କ ସମସ୍ତ ବିଗ୍ରହ
ହେଲେହେଁ ଭୂଷଣହୀନ ନୈସର୍ଗିକରୂପେ
ଦିଶଇ ସୁନ୍ଦର ଅତି ସେ ଦିବ୍ୟମୂରତି,
ସତ୍ୟଙ୍କ ଅଦୂରେ ଦେଖ ତୁଳାଦଣ୍ଡଧାରୀ
ନିସ୍ତରଙ୍ଗ ହ୍ରଦ ପରି ଗମ୍ଭୀରମୂରତି
'ନ୍ୟାୟଦେବ' ନେତ୍ର ବନ୍ଧ ଘନକୃଷ୍ଣ ବାସେ,
ମାନବତ ନିଜ ପର ଜ୍ଞାନର ରୋଧକ, (୧)
ତାଙ୍କ ପାଶେ 'ତପଃ' କ୍ଷୀଣବପୁ ଜଟାଧାରୀ,
ମୁଞ୍ଜମେଖଳାରେ ବନ୍ଧ ଶୋଭେ କଟିଦେଶ (୨)
ବଲ୍‌କଲ, ଲମ୍ବିତ ଲମ୍ବଶ୍ମଶ୍ରୁ ବକ୍ଷଃସ୍ଥଳେ
ତପଃ ପାଶେ 'କ୍ଷମା' ହସ୍ତେ ଆବରଣପଟ,
ବ୍ୟସ୍ତ ସଦା ପର ଦୋଷ ଆବୋରିବା ପାଇଁ
ତାଙ୍କ ପାଶେ 'ଦୟାଦେବୀ' ସ୍ନିଗ୍ଧଜ୍ୟୋତିର୍ମୟୀ
ମୁକ୍ତାଫଳଗଞ୍ଜି-ଅଶ୍ରୁ ଝରେ ନେତ୍ରଯୁଗେ
ପରଦୁଃଖେ, ବାହୁ ତୋଳି ଡାକୁଛନ୍ତି କି ସେ
ଦୁଃଖିଜନେ ଆଶ୍ରା ଦେବାପାଇଁ ନିଜକୋଡ଼େ !
ପୂର୍ଣ୍ଣକୁମ୍ଭ ଜଳ ଛଡ଼ି ପ୍ରକ୍ଷାଳନ୍ତି ଦେହ
'ଶୌଚଦେବ', ସଙ୍କୁଚିତ ସଦା ଅନାଚାରେ,
ବିରାଗୀ କାଢ଼ନ୍ତି ଯେହ୍ନେ ବସ୍ତ୍ର, ଆଭରଣ,
ନିୟୋଜିତ ଦେହ ମନ ପର-ସେବା ଲାଗି,
ନିତିକ୍ଷା ସେ ରତ ସଦା ମହାତ୍ୟାଗବ୍ରତେ, (୩)

---

(୧) ମାନ ବଡ଼, ନିଜ ପର, ଏହି ଜ୍ଞାନର ରୋଧକ । ଘନ କୃଷ୍ଣ ବସନରେ 'ନ୍ୟାୟଦେବ'ଙ୍କ ନେତ୍ରବନ୍ଧ । (୨) ମୁଞ୍ଜ— ତୃଣବିଶେଷ । (୩) ମହାତ୍ୟାଗ-ବ୍ରତେ ଆତ୍ମୋତ୍ସର୍ଗବ୍ରତରେ ।

Digitized by PPRACHIN, SOA

ସାଧୁଜନ-ସେବ୍ୟ ପବନ୍ତ 'ଆର୍ଜବ' (୧)
ଶାଳସମ ଋଜୁଦେହ, ଋଜୁ ଦୃଷ୍ଟି ରେଖା,
ବିଶ୍ୱଶୋଭାବର୍ଣ୍ଣୀ, ଦେଖ ଦେବୀ 'ପଦ୍ମାଳୟା'
ଆଭରଣ ପ୍ରଭାଜାଳେ ନଭ-ଉଦ୍ଭାସିନୀ;
ଫୁଲ୍ଲ ରଙ୍ଗଶତଦଳ ଶୋଭେ ଦକ୍ଷକରେ,
ଦକ୍ଷେତରେ ଧାନମେଣ୍ଟି, ଦେବୀଙ୍କ ପ୍ରସାଦେ (୨)
ଝମକେ ସ୍ୱର୍ଗେ ଇନ୍ଦ୍ରଧନୁ, ପୁଷ୍ପରାଜି ବନେ,
ଜଗତଜୀବନ ଦୃଷ୍ଟି ଶସ୍ୟ ଶସ୍ୟକ୍ଷେତ୍ରେ,
ନିରତେ ଅସ୍ଥିର ଦେବୀ, ଆସନ୍ତୁ ଆସନେ
ନିରତେ କରନ୍ତୁ ସ୍ଥିତି, ସ୍ୱଭାବେ ଚପଳା;
ଶ୍ୱେତପଦ୍ମାସୀନା ଏହୁ ଦେବୀ 'ସରସ୍ୱତୀ'
କୁନ୍ଦେନ୍ଦୁ-ତୁଷାର-ପ୍ରଭା, ଶୁଭ୍ରବସ୍ତ୍ରାବୃତା,
ଏକହସ୍ତେ ଗ୍ରନ୍ଥ, ଆନେ ବୀଣା ସପ୍ତସ୍ୱରା,
ଅସାଧ୍ୟ ସାଧନ ଫଳେ ତୁଷ୍ଟ ହୋଇ ଥରେ
ଦେଇଥିଲେ ଏହି ମୃତସଞ୍ଜୀବନୀ ବୀଣା
ନବତାନେ ବାଇବାକୁ ବଲ୍ମୀକପ୍ରଭବ—
ମୁନିବରେ, ପୁଣି ଥରେ କୃଷ୍ଣଦ୍ୱୈପାୟନେ (୩)
ଭଲି ସେବକ ଆଉ ନଦେଖି ଭାରତେ,
ଭାରତୀ ସେ ବୀଣା ଏବେ ଧରନ୍ତି ଶ୍ରୀକରେ;
ଏ ଆଦି ଯାବତ ଦେବଦେବୀ ଭାରତର
କଳି-ଆଗମନ-ଭୟେ କରନ୍ତି ମନ୍ତ୍ରଣା—
କେ କାହିଁ ଲୁଚିବେ, କେଉଁ ବିଜନ ପ୍ରଦେଶେ,

---

(୧) ଆର୍ଜବ—ସରଳତା । (୨) ଲକ୍ଷ୍ମୀଶୋଭା ଏବଂ ସମ୍ପଦର ଅଧିଷ୍ଠାତ୍ରୀ । ଶତଦଳ ଶୋଭାବ୍ୟଞ୍ଜକ ଧାନମେଣ୍ଟି ସମ୍ପଦ ବ୍ୟଞ୍ଜକ । (୩) ଲକ୍ଷ୍ମୀଙ୍କର ଚଞ୍ଚଳା ନାମ ପୁରାଣ ପ୍ରସିଦ୍ଧ ଏବଂ ତାଙ୍କର ଚଞ୍ଚଳତା ଅନୁଭବ ପ୍ରସିଦ୍ଧ ଅଟେ ।

Digitized by PPRACHIN, SOA

ବିଲମ୍ବିତ ନାହିଁ ଆଉ ! ତ୍ୱରିତ ବଦନେ
ବିରାଜଇ ଯେଉଁ ଶିଷ୍ଟ ଯିବ ଯିନା ଲଭି
ଅଳ୍ପକ୍ଷଣେ, ଗଲେଣ ମାତ୍ର ରହିବ ତା ସ୍ମୃତି !
ଧର୍ମର ଏ ଉପବନ ହେବ ପରିଣତ
ପାପ-ମରୁଭୂମେ ଏବେ, ଲକ୍ଷ୍ମୀଲୀଳାସରଃ—
ଶୁଖିଯିବ, ଆହା ଏହି କ୍ରୂର-ଅବଗ୍ରହେ !" (୧)
ଏହା କହୁଁ କହୁଁ ନଭଃ ଭୀଷଣ ତମସେ
ଗଲା ପୂରି, ବିକଟାଳ-କରାଳ-ଆକୃତି
ଉର୍ଦ୍ଧ୍ୱେ ଓହ୍ଲାଇଲେ କଳି ନିଜ ଦଳବଳେ,
ଲୋହିତ ମଙ୍ଗଳ ଗ୍ରହ ପ୍ରାପ୍ତେ ଭସ୍ମାବହ,
ଅମଙ୍ଗଳ ବେଦନଚକ୍ଷୁ, ନିଃସରଇ ଯହୁଁ
ଭୀମ ଧୂମକେତୁ ପୁଚ୍ଛସମ ଜ୍ୟୋତିରେଖା,
କୃତାନ୍ତର କରପତ୍ର ପ୍ରାପ୍ତ ତ୍ରାସପ୍ରଦ (୨)
ଆବର୍ତ୍ତିସନ୍ନିଭ ତୁଣ୍ଡେ ତୀକ୍ଷ୍ଣଦନ୍ତାବଳୀ (୩)
ଆସୁଛନ୍ତି ଯେଝା ବେଣେ କଳି ପଛେ ପଛେ
କଳି-ଅନୁଚରବୃନ୍ଦ, ସଦା ଧର୍ମଦ୍ରୋହୀ,
ଲଳିତଲଳନା ଭ୍ରୂରୂ-ଗ୍ଲୁରୂଗ୍ଲୁ ପଧାସ୍ମୀ
ଅଗ୍ରେ ବିଶ୍ୱଜୟୀ 'କାମ' ପୁଷ୍ପର ମୁକୁଟ
ଶୋଭେ ଶିରେ, ପୁଷ୍ପମାଳା ଲମ୍ବିତ ଉରସେ,
ଆସୁଛନ୍ତି ଚଉପାଶେ ବେଢ଼ି ନରୀପ୍ସରା
କୁରଙ୍ଗ-ତରଙ୍ଗେକ୍ଷଣୀ ଚମ୍ପକ-ବରଣୀ,
ବିମ୍ବାଧରୀ, ଘନଲମ୍ବକେଶୀ, ସ୍ମେରାନନା
ବାରଙ୍ଗନାଦଳ ରତି ଜିଣି ରୂପବତୀ,

---

୧ । ଅବଗ୍ରହ—ଅନାବୃଷ୍ଟି । ୨ । କରପତ୍ର—କରତ । ୩ । ଆବର୍ତ୍ତି—ଭଉଁରୀ ।

Digitized by PPRACHIN, SOA

ସ୍ଫୁରୁ ବକ୍ଷ କୋରକତ ଉରଜ କୋରକେ
ଲାଲସାର ସ୍ୱର୍ଣ୍ଣନୀଡ଼ ଅଥବା ସେ ବେଦୀ (୧)
ସୁବଳିତ ରମ୍ଭାଉରୁ ଆବୃତ ଦୁକୂଳେ
ଯେଉଁ ଆବରଣ ଭେଦ ନିଭୃତ ପ୍ରଦେଶ—
ସଞ୍ଚରଣେ ନେଇ ସଦା କାମୁକ କଳ୍ପନା !
ବୀଣାଧ୍ୱନି ସଙ୍ଗେ ଉଠେ ସଙ୍ଗୀତର ଧ୍ୱନି
ଯେ ଦନ୍ତୁ, "ହେ ଯୁବାକୁଳ କ୍ଷଣସ୍ଥାୟୀ
ଯୁବାକାଳ, ମଧୁକାଳ ଏହିଟି ଜୀବନେ ।
ଏହା ଜାଣି, ଆନେ ଭେଜ, ମଜ୍ଜି ପ୍ରେମରସେ
ପୂର୍ଣ୍ଣ ଭୋଗରେ ସ୍ପୃହା, ପୌରୁଷ-ଜୀବନେ
ପୁରୁଷାର୍ଥ ଏକ ସିନା ବାମା ଉପାସନା ।
କାମାତୁର ନବୀନାଙ୍କ କାମନା ପୂରାଇ
ସାର୍ଥକ ପୁରୁଷପଣ କର ଏ ବୟସେ,
ପ୍ରଭାତ ଶିଶିରେ ସ୍ନାନ, ସଜପୁଷ୍ପ ଯେବେ
ବୃନ୍ତାସନେ ହସୁଥାଇ ଅଳିକି ଅନାଇ
ପ୍ରେମୋତ୍ସୁକେ, ବିଳମ୍ବିଲେ କେବେ କି ସେ ଆଉ
ଖଟ୍ଟରେ ମଉଳି ପୁଷ୍ପ ବାସି ହେବା ଯାଏ ?
ମଦାଳସୀ-ରମ୍ୟସ୍ତନ ସ୍ୱର୍ଣ୍ଣମେରୁରୂପୀ,
ଏ ପ୍ରତ୍ୟକ୍ଷ ସ୍ୱର୍ଗ ଛାଡ଼ି, କେଉଁ ଭ୍ରମେ ପଡ଼ି,
ହେ ଯତି, କରୁଛ ତୁମ୍ଭେ ବ୍ରତ ଘୋର ତପ
ଅପ୍ରତ୍ୟକ୍ଷ ଅନିଶ୍ଚିତ ସ୍ୱର୍ଗଭୋଗ ଆଶେ ?
କି ଭୋଗ ସେ ସ୍ୱର୍ଗେ ଅଛୁ ଏ ଭୋଗକୁ ବଳି
ହେ ପଣ୍ଡିତକୁଳ, ଆତ୍ମବଞ୍ଚନାରେ ପଡ଼ି
ଚନ୍ଦ୍ରକାନ୍ତ ହୋଇ ସିନା କଟାଉଛ ବୃଥା

---

୧ । କାମୁକମାନଙ୍କର ଲାଲସା ବିହଙ୍ଗର ସୁବର୍ଣ୍ଣନୀଡ଼ ପରି ।

Digitized by PPRACHIN, SOA

ଯୁବାକାଳ କବିତାର ସଂକଳ୍ପ ଆମୋଦେ !
ସୁନ୍ଦରୀ-ଅଧର ମଧୁ ସଙ୍ଗେ କି ହେ ସର
କାବ୍ୟରସ ? ଆଜ କାବ୍ୟ ଫିଙ୍ଗିଦେଇ ଦୂରେ
ଯୁବତୀ-ଯୌବନ କାବ୍ୟ ପଠ ଅବିରତେ,
ହେ ବୀର, ବିଫଳେ କିପାଁ ମର ଅନୁସର
ରଣଭୂମି-ମରୁଭୂମେ ଯଶ-ମରୀଚିକା,
ସମ୍ମୁଖେ ସୁଲଭ ହୁଡ଼ୁ ସୁଧା-ତରଙ୍ଗିଣୀ ?
ମହାବିଭୀଷିକାମୟୀ ରଣସ୍ଥଳୀ ତେଜି
କେଶର-ବିକଟେ ପଶ ସେ ସଂଗ୍ରାମେ ପଶି
ରସିକା ସଙ୍ଗତେ ଯୁଝି କାମ-କୁତୂହଳେ—
ଜନ୍ମୁଁ ପରାଜୟେ କୃତୀ ହୁଅନ୍ତି ରସିକେ,"
ଢାଳଇ ଶ୍ରବଣେ ସୁଧା କଣ୍ଠଯନ୍ତ୍ର ଧ୍ୱନି
ଏସନେ ସୁତାନେ ମିଶି ଭୂଷଣ ଶିଞ୍ଜିତେ
କଜ୍ଜ୍ୱଳକେଶୀଙ୍କ ରୂପେ ସମୁଜ୍ଜ୍ୱଳ ଦିଶେ
ସେ ଦେଶ, ବସନ୍ତେ କୁଞ୍ଜ ପୁଷ୍ପ-ପୁଞ୍ଜେ ଯଥା,
ପୁଷ୍ପାବୃତ ଖାତପ୍ରାୟେ ବାହ୍ୟେ ତୋରି ବାମା
ହସ୍ତେ ଶୋଭେ ପୁଷ୍ପ ମାଳ୍ୟ ବସ୍ତ୍ର ତଳେ ତଳେ
ଗଳି ଗଳି ଗଳୁଛନ୍ତି ଅଲକ୍ଷିତ ରୂପେ
ପଚଗୁରଦଲ 'ମେହ', 'ଉପଦଂଶ' ଆଦି,
ତାମ୍ବୁଲ କରଙ୍କଧର ଗଳନ୍ତି ପଶ୍ଚାତେ
ଧନିକନନ୍ଦନଗଣ ସମ୍ପଳୀଶୋଷିତ (୧)
ସର୍ବସ୍ୱ, ପାଣ୍ଡୁରରକ୍ତ ଶରଦଭ୍ର ଯଥା, (୨)

---

(୧) କୁଟ୍ଟଣୀମାନଙ୍କଦ୍ୱାରା ହୃତସର୍ବସ୍ୱ । (୨) କାମୁକମାନେ ଇନ୍ଦ୍ରିୟାସକ୍ତ ହୋଇ କ୍ରମଶଃ ନିର୍ବୀର୍ଯ୍ୟ ହୁଅନ୍ତି ଏବଂ ସେମାନଙ୍କ ଦେହ ବିବର୍ଣ୍ଣ ହୋଇ ପାଣ୍ଡୁର ଦିଶେ । ସେମାନଙ୍କ ଦେହରେ ରକ୍ତ ନ ଥାଏ । ଶରଦଭ୍ର ଯେପରି ଜଳଶୂନ୍ୟ ଏବଂ ପାଣ୍ଡୁର, କାମୁକମାନେ ସେହିପରି ରକ୍ତଶୂନ୍ୟ ଏବଂ ବିବର୍ଣ୍ଣ ହୋଇଯାନ୍ତି ।

Digitized by PPRACHIN, SOA

ସର୍ବ୍ବ ଆଜୀବନ ବିକା ରୂପ ଜୀବା ପଦେ ।
ଜ୍ଞାନ ପ୍ରଭ ବୈଶ୍ୱାନର ଅଙ୍ଗୁଳି ନିର୍ଦ୍ଦେଶି
କହିଲେ ପୌରବେ, "ମହାଦୁଷ୍ଟମତ ଏହୁ,
ଥରେ ମୁହିଁ ଚନ୍ଦ୍ରଚୂଡ଼ନେତ୍ରୁ ବାହାରି (୧)
ଦହିଥିଲି ଏ ଦୁରନ୍ତେ, ତାଙ୍କୁ ସେହି ହେରୁ
ଡରେ ଦୁଷ୍ଟ, ତାଙ୍କ ଭକ୍ତପାଶୁଁ ରହେ ଦୂରେ ।
ଆକ୍ରୋଶେ ଗରଜି 'କ୍ରୋଧ' ଆସେ କାମ ପଛେ
ରକ୍ତ ଚକ୍ଷୁଃ ସତେ କି ସେ ଦହିବ ଜଗତ,
ବଜ୍ରର ଔରସେ, ବାତ୍ୟାଗର୍ଭେ ଜାତ ହୋଇ
ବଡ଼ବାର ସ୍ତନ୍ୟ ବଢ଼ିଥିଲି ସେ ସାଗରେ (୨)
ଭୂକମ୍ପ-ଦୋଳରେ ସୁଖେ ଦୋହଲି ଶୈଶବେ
ମହାଭୟଙ୍କର ରିପୁ, ରକ୍ତିମା ଜନ୍ମାଇ
ଉପୁଜାଏ ବିରକ୍ତି କି; ବହ୍ନିଶିଖା ଜାଳି
ଉପୁଜାଏ ତମଃଜ୍ଞାନ-ବିବେକ ବିଲୋପୀ (୩)
ସହଚର ରୂପେ ତାର ଆସଇ ସଙ୍ଗତେ
'ହତ୍ୟା' କରବାଳ ହାତେ, ରକ୍ତଲିପ୍ତ ବାସେ;
ଭର୍ମ ପ୍ରାୟ ଫଁ ଫଁ ସ୍ୱନେ ନିଶ୍ୱାସି ସଘନେ
ଆସୁଛନ୍ତି ପରିଜନେ, ବହଇ ଅଧରୁ
ଲହୁଧାର, ନିଜଦନ୍ତେ ନିଜକୁ କାମୋଡ଼ି,
କାଳଭୁଜଙ୍ଗିନୀ ପ୍ରାୟେ ଭ୍ରୁକୁଟି ଲଲାଟେ,

---

(୧) ହରକୋପାନଳରେ ମଦନ ଦଗ୍ଧ ହୋଇଥିବାର କଥା ପୁରାଣରେ ଅନୁସନ୍ଧେୟ । (୨) ବଡ଼ବା—ସମୁଦ୍ର-ଗର୍ଭସ୍ଥିତ ବଡ଼ବାନଳର ପ୍ରସୂତି ରୂପା ଘୋଟକୀ । ସମ୍ଭବତଃ ଜଳମଗ୍ନ ଆଗ୍ନେୟଗିରିମାଳା । ୩) କ୍ରୋଧ ରକ୍ତିମା ଜନ୍ମାଏ, ଅଥଚ ସେଥି ସଙ୍ଗେ ସଙ୍ଗେ ବିରକ୍ତି ଜାତକରେ । ଅଗ୍ନି ଜାଳିଦିଏ ଅଥଚ ସେହି ଅଗ୍ନି ଦ୍ୱାରା ଆଲୋକ ନ ଜନ୍ମାଇ ତମଃ ଜାତକରେ ।

Digitized by PPRACHIN, SOA

ଶୃଙ୍ଗହୀନ ହୋଇ ସୁଦ୍ଧା ଏକକୁ ଆରକେ
ବନ୍ଧନେଉଦ୍ଦ୍ୟତ, ଯେହ୍ନେ ସବତ୍ସା ଧେନୁକା (୧)
କଥାକେ କଥାକେ ଥୋକେ ଯାଉଛନ୍ତି ଜୁଟି
ରସବହ୍ନି ଯୋଗେ ଯଥା, କଥାକେ କଥାକେ (୨)
ବାଉଆବାଉଁଇ ହୋଇ ମରନ୍ତି ପାମରେ,
କ୍ରୋଧ ପଛେ 'ଲୋଭ' ସଦା ପ୍ରସାରନ୍ତ ପାଣି
ଭିକ୍ଷାଲାଗି, କାକୁବାଣୀ କରନ୍ତେ ବଦନେ (୩)
ସକଳ ଇନ୍ଦ୍ରିୟେ ଯେହ୍ନ କଲେ ହେଁ ବଶତ
ଜିହ୍ୱାସମଧିକତାର ରସନା କହାସେ
ଗୋଡ଼ାନ୍ତି ସଙ୍ଗତେ ଯାର ଅଗ୍ରପଷ୍ଠ ବଟୁଦଳ,
ଅତ୍ୟାହାରେ ରୋଗୀ. ପୁଣି ରୋଗେ ଅତ୍ୟାହାରୀ,
ରସନାରୁ ଅହର୍ନିଶ ସ୍ରବୁଅଛି ଲାଳ,
ଗୋଡ଼ାନ୍ତି ଏ ଦଳ ସଙ୍ଗେ ଧନଲୋଭୀ ମୂଢ଼େ,
ଧନ ଯାଙ୍କ ପିତାମାତା, ଅଭୀଷ୍ଟ ଦେବତା,
ଅକାତରେ କନ୍ୟା କିବା ବନିତା ଭଗିନୀ
ଦେବାକୁ ଧନ୍ଦକେ ତୁଚ୍ଛ ଧନ-ବିନିମୟେ,
ଏଦଳ କରନ୍ତି ବୃଦ୍ଧି ବୃଦ୍ଧ ବାର୍ଦ୍ଧକ୍ୟେକେ
ଅଧମର୍ଣ୍ଣ-ମଣୀଙ୍କର ଉତ୍ତମର୍ଣ୍ଣରୂପୀ
କୁବେରଙ୍କ ବରପୁତ୍ରେ, ବଢ଼ଇ କରନ୍ତେ
(ମଦ୍ୟପରେ ତୃଷା ଯଥା ମୁହୁର୍ମୁହୁ ପାନେ)
ଧନ ବୃଦ୍ଧି ସଙ୍ଗେ ଯାଙ୍କ ଧନର ଲାଳସା
ମହାରଙ୍କ, ମିଷ୍ଟବାକ୍ୟଦାନେ ମହାଦାତା (୪)

(୧) ଧେନୁକା—ଗାଈ । (୨) ରସ—ବାରୁଦ । (୩) କାକୁ—ଦୈନ୍ୟୋକ୍ତି । (୪) କୃପଣମାନେ ଅତଶକ୍ତ ମିଷ୍ଟଭାଷୀ ହୁଅନ୍ତି ।

Digitized by PPRACHIN, SOA

ଭବଦୁଃଖହର-ମୋକ୍ଷପଥର ବରୋଧୀ,
ଶୂନ୍ୟକୁ ଆକଟେ ଧରି ନବଭ୍ରଡ଼ ଆଶ୍ଳେଷେ
ଅଛେ ମୋହ ଶିଷ୍ୟବ୍ୟୂହ ଅନନ୍ତ ଗହଣେ,
କୁଟୁମ୍ବ-କଙ୍କାଳେ ମଗ୍ନ, କୁଣ୍ଠିତ ସେ ସଦା (୧)
ଦଣ୍ଡାନ୍ତରକାଳେ ସୁଦ୍ଧା ଈଶ୍ୱର ସ୍ମରଣେ,
ଶାସ୍ତ୍ରଜ୍ଞାନ ସତ୍ତ୍ୱେ ଜଡ଼େ ! ଅନ୍ଧ ଚକ୍ଷୁ ଥାଇ.
ହେଲେ ହେଁ ଜାଗ୍ରତ ଗାଢ଼ନିଦ୍ରା-ଅଭିଭୂତେ,
ଦର୍ଶନ୍ତି ହୁଅନ୍ତ ଯାହା, ଅହା ମହାଘୋର ତମେ
ଝାପ ସତ୍ତ୍ୱେ, ମମତାର ଦୃଢ଼ୋଛେଦ୍ୟ ବନ୍ଧନେ,
ଅଛେ 'ମଦ' ତୁଙ୍ଗ ଶିର ଲାଗିଛୁ ଆକାଶେ,
ମହା ଅହମିକାମତ୍ତ, ହସ୍ତ ବକ୍ଷସ୍ଥଳେ (୨)
ସଙ୍ଗେ ଉପାସକଦଳ ଗମ୍ଭୀର ମୂରତ;
ଊର୍ଦ୍ଧ୍ୱ ଦୃଷ୍ଟି; ପଦଭରେ ଟଳେ ବସୁନ୍ଧରା,
ଆପଣାକୁ ବଡ଼ ମଣି ସମସ୍ତେ କୁଣ୍ଠିତ
ମହାର୍ଘ ବଚନବ୍ୟୟେ, ମାନ ହାନି ଭୟେ,
ଅହମିକା-କୂପେ କୂପମଣ୍ଡୂକ ସରବେ,
ଧନମତେ ମତ୍ତ କେହୁ, କେହୁ ଜନମଦେ,
ଭଜନର ମଦେ କେହୁ, ପଦେ କେହୁ ଅବା
କେହୁ ରୂପମଦେ, କେହୁ ଆଭିଜାତ୍ୟମଦେ
ବିଦ୍ୟାମଦେ, ବୁଦ୍ଧିମଦେ ସ୍ଫୀତ ହୋଇ କେହୁ
ନିଜକୁ ଅତୁଳ ମଣି ଧରା ମଣେ ସରା;
ଅନ୍ୟଠାରେ ଅବନତ ହୋଇ ଅତରେକେ

---

(୧) କମ୍ପାଳ—ପଙ୍କ । (୨) ଅହମିକା—ମୁଁ ବଡ଼, ମୋହପରି ଆଉ କେହୁ ନାହିଁ—ଏହି ଜ୍ଞାନ ।

Digitized by PPRACHIN, SOA

ଅନ୍ତ ବନସ୍ଥର ଘନ କରଇ କେ ପୁଣି (୧)
ଅହଙ୍କାର ଶୂନ୍ୟ ବୋଲି ମନେ ଅହଙ୍କାରି;
ମନ୍ଦ ପଛେ, ଆସେ 'ଈର୍ଷା' କୃଶ-କଳେବରା (୨)
କରାଳକୁଟିଳଦୃଷ୍ଟି, ପାଣ୍ଡୁରବଦନା,
କ୍ରୂର ଗୃହିଣୀରେ ଯାର ଯାଉଛୁ ଝାଉଁଳି
ଚଉଦଗେ ତରୁଲତା, ଯଥା ଉତ୍ପବାତେ,
ରୋଗକ୍ଲିଷ୍ଟ ପ୍ରାୟେ ଦୁଷ୍ଟା ଅପ୍ରସନ୍ନା ସଦା,
ଶୁଷ୍କାସ୍ୟେ ଉପୁଜେ ହାସ୍ୟ ଯଦି କଦାଚତେ;
ସେ କେବଳ ପର ଦୁଃଖେ; ଦୁଃଖେ କାହାରି
କାନ୍ଦିବାର ନଦେଖିଲେ ପକାଏ ସେ କାନ୍ଦି
ସ୍ତବେ ରସନାରୁ ତାର ବିଷ ଅହର୍ନିଶ,
ଏ ବଡ଼ ବିଷମ ବିଷ, ଯାର ତୀବ୍ର ତେଜେ
ଅନ୍ୟ ଘାରି, ତହିଁ ଦୁଷ୍ଟା ଆପେହୁଁ ଏ ଘାରି,
ପରଦୋଷ-ଦରଶନେ ଦିବ୍ୟ ଚକ୍ଷୁଷ୍ମାନ,
ପର ନିନ୍ଦାବାଦଦୂକ, ମୂକ ପର ଯଶେ,
ପରହାନିପ୍ରିୟ ଝଳ କାନକୁହା ଆଦି
ଭକ୍ତଙ୍କର ସୁଖ ଦୁଃଖେ ଯାଉଅଛୁ ଶୁଖି
ପରସ୍ପର ମୁଖଶିରୀ ଦେଖି ପରସ୍ପରେ,
ଘାରି ହେଉଅଛୁ କେହି ଶୁଣି ଲୋକ ମୁଖେ
ପରଯଶକଥା, ଯଥା ବୃଶ୍ଚିକଦଂଶନେ,
ପର ସଉଭାଗ୍ୟେ କେହି ମହାଖେଦ ବହି
ଲଘୁକରେ ହୃଦୟର ଦୀର୍ଘଶ୍ୱାସ ତେଜି;

(୧) ଘନ—ଛଳ । (୨) ପରର ସୌଭାଗ୍ୟ ଦେଖି ଈର୍ଷାନ୍ୱିତ ଲୋକଙ୍କ ଦେହ ଶୁଷ୍କ ହୋଇଯାଏ । ଈର୍ଷା ଏମାନଙ୍କର ଅଧିଷ୍ଠଦେବତା; ସୁତରାଂ କୃଶକଳେବରା ।

Digitized by PPRACHIN, SOA

ମହାଘୋର ଈର୍ଷାନଳେ ଜଳି ନିରନ୍ତରେ
ଜଳନ୍ତେ ନର-ଉଦ୍‌ବେଗ କରନ୍ତି ପିଶୁନେ
ଘନାପ୍ରାୟେ ରହି ରହି କହି ନାନା କଥା (୧)
ଆସୁଅଛୁ 'ମିଥ୍ୟା' ଯାର ବସ୍ତ୍ରଯାକ ତାଳି,
ତାଳି ପରେ ତାଳି ପୁଣି ତାଳି ତା ଉପରେ
ଏତେ ତାଳି ସତ୍ତ୍ୱେ ଫୁଟି ଦିଶୁଛୁ ତା ଦେହ,
ପୁନଃ ପୁନଃ ତେଣୁ ନୂଆ ନୂଆ ତାଳିମାନ
ଲଗାଉଛୁ ମହାବ୍ୟସ୍ତେ ଯେ ଜୀର୍ଣ୍ଣବସନେ,
ଆସନ୍ତି ପୂଜକ ଦଳ ଜଳ୍ପ ନାନା ମତେ
ପ୍ରବୀଣ ଗ୍ରାମ୍ୟ ଆପଣେ ପାରିଷଦପଣେ
ପ୍ରଭୁର ଅଲୀକଯଶ ରଟନେ କେ ରତ
ଗୃହେ ପ୍ରଭୁମନ-ତୋଷିଣ କୌଶଳୀ
କେହି କରୁଅଛୁ ନିଜ ବଂଶର ବଡ଼ିମା (୨)
କେହି ବିଦ୍ୟା ସମ୍ପତ୍ତିର ପ୍ରେତାଦ୍ଧର କଥା
କହେ, କେହୁ ଦୂରଦେଶ ପର୍ଯ୍ୟଟକ, କେହୁ
କହଇ ସେ ଯାଇଥିଲା ମାନସରୋବରେ
ଦେଖିଲା ସେ ତହିଁ ଗଣ୍ଡଭୈରବ ବିହଙ୍ଗ
ଉର୍ଦ୍ଧ୍ୱେ ଚଳିମାଶ ସରସ୍ତାଶ-କରିପଲୁଁ
ଦନ୍ତଗୋଟା କରି ନେଇଗଲା ଚଞ୍ଚୁ ନଖେ;
କେହି କହେ କିଷ୍କିନ୍ଧ୍ୟାର ମର୍କଟ ନଗରେ

---

(୧) ମିଥ୍ୟାବାଦୀ ଲୋକେ ଅନର୍ଗଳ ସ୍ପଷ୍ଟ ବାକ୍ୟ କହିପାରନ୍ତି ନାହିଁ । ଗୋଟିଏ ମିଥ୍ୟା ଘୋଡ଼ାଇବା ସକାଶେ ଆଉ ଗୋଟିଏ ମିଥ୍ୟା କହନ୍ତି । ତାକୁ ଘୋଡ଼ାଇବାପାଇଁ ପୁଣି ମିଥ୍ୟା କହନ୍ତି । ଏତେ କରି ସୁଦ୍ଧା ଧରା ପଡ଼ନ୍ତି ।
(୨) ବଡ଼ିମା—ବଡ଼ପଣ ।

Digitized by PPRACHIN, SOA

ଶୁଣିଛୁ ସେ ନାଳ କଣ୍ଠେ-କର୍ଣ୍ଣରସାୟନ
ମର୍କଟସୁନ୍ଦରୀଙ୍କର ସଙ୍ଗୀତ-ମାଧୁରୀ,
କେହୁ କହେ ବହିର୍ଷଣପାଳିତ ସିଂହଳେ
ଦେଖି ଆସିଛୁ ସେ ଚକ୍ଷେ ଅଦ୍ଭୁତ-ମୂରତି
ଚତୁର୍ମୁଖ, ଅଷ୍ଟଭୁଜ, ଅଷ୍ଟପାଦ ଆଦି,
କେହୁ କହେ, କାଶ୍ମୀରେ ମୁଁ ଦେଖିଲି ମାନବ
ଲମ୍ବ କର୍ଣ୍ଣ, ଏକ କର୍ଣ୍ଣ ଶେଯରୂପେ ପାରି,
ଆନ କର୍ଣ୍ଣେ ଘୋଡ଼ହୋଇ ଶୁଅନ୍ତି ସେ ଶେଯେ
ଅବିଶ୍ୱାସବ୍ୟଞ୍ଜି-ସ୍ଫୁରିତ ଶ୍ରୋତାମୁଖେ ଦେଖି,
ହଦର୍ପେ ପକାଇ ଗୁଣ କହଇ ସେ ପୁଣି—
ଆଜନ୍ମ ମୁଁ କହୁ ନାହିଁ ମିଥ୍ୟା କେଉଁକାଳେ
ମିଥ୍ୟାଠାରୁ ପାପ ଆଉ ନାହିଁ ତ୍ରିଜଗତେ ।" (୧)
ସୁବସ୍ତ୍ରେ ଲୁକ୍କାୟିତ ବପୁ ଆବରି ଯତନେ
ହାସ୍ୟେ ମିଷ୍ଟମୁଖେ, 'ଶାଠ୍ୟ' ଆସଇ ତା ପଛେ,
କକ୍ଷ ତଳେ ତୀକ୍ଷ୍ଣ ଗୁପ୍ତି ଗୁପତେ ପୂରାଇ
ବିଷଦଗ୍ଧ, ବାହ୍ୟେ ବଡ଼ ନମ୍ରାହ-ମୂରତି,
ମାତ୍ର ବଡ଼ ଦାଉଘାତୀ, ଦୁର୍ମତି ଅନ୍ତରେ,
ଆସୁଛନ୍ତି ଅନ୍ତେବାସୀ ଦୁରନ୍ତ ସରବେ (୨)
କେହୁ ଚୌର୍ଯ୍ୟେ ରତ, କେହୁ କୃତ୍ରିମ ମୁଦ୍ରଣେ,
କୃତ୍ରିମଲେଖ୍ୟ ଲିଖନେ, ସିନ୍ଧେ କେହୁ ଅବା, (୩)
କେହୁ ବିଷଦାନେ, କେହୁ ଗୁପତ ମାରଣେ,

(୧) ମୁଁ ଜୀବନରେ କେବେ ମିଥ୍ୟା କହୁ ନାହିଁ—ଏପରି ଉକ୍ତି ମିଥ୍ୟାବାଦୀଙ୍କ ମୁଖରୁ ପ୍ରାୟଶଃ ଶୁଣାଯାଏ । ମିଥ୍ୟାବାଦୀ—ସାମାନ୍ୟ କଥାରେ ଶପଥ କରେ । (୨) ଅନ୍ତେବାସୀ—ଶିଷ୍ୟ । (୩) କୃତ୍ରିମଲେଖ୍ୟ—ଜାଲ୍ ଦାସ୍ତାବିଜ ।

Digitized by PPRACHIN, SOA

ଧର୍ମଭେକଧାରୀ କେହୁ ଗୈରିକ ବସନେ,
ଦୀର୍ଘ ଶ୍ମଶ୍ରୁ, ଦୀର୍ଘ ନଖ, ଦୀର୍ଘ ଜଟା-ଜୁଟେ
ମଣ୍ଡିତ, କାହାର ଅବା ଭସ୍ମେ ବୋଳା ତନୁ,
କେହୁ ଅବା ଜପାମାଳା ଜପେ ଅବିରତେ
ନାନା ଗୂଢ଼ ଆବରଣେ ଆବୃତ ସରବେ,
ଭେଦ ନ ପାରଇ ଯାହା ଚକ୍ଷୁ ସାରସ୍ୱତ । (୧)
କୃଷ୍ଣଶୁକ୍ଳ ବେନବର୍ଣ୍ଣି-ଛିନ୍ନବସ୍ତ୍ରଧାରୀ,
ବେନି କରେ ବେନି କାଠି ବଜାଇ କୌତୁକେ
ଆସଇ 'କଳହ', ଯାର ଶିରୋରୁହ ଶିରେ
ପରସ୍ପର ଅଙ୍ଗଲଗ୍ନ, କଣ୍ଟକ ଯେସନ
ଲେଖ୍ୟ ନିଦର୍ଶନ, ସାକ୍ଷ୍ୟ, ବ୍ୟବସ୍ଥା ପ୍ରମାଣ,
ମୀମାଂସା, ବର୍ଣ୍ଣିନାପତ୍ର ଆଦି ଲିପି ଯେତେ,
ବଡ଼ା ବଡ଼ା କରି ଦୃଷ୍ଟ ଖୋସିଛି କଟୀରେ
ଅମୋଘ ଶୋଷଣ ଅସ୍ତ୍ର ! ଯେ ଅସ୍ତ୍ର ପ୍ରୟୋଗେ
ଶୋଷିନିଏ ଧନୀ ଧନ, ଅନ୍ନ ଦରିଦ୍ରର
ଅଲକ୍ଷିତେ, ନାନାମତେ ଅନର୍ଥ ଭିଆଇ,
ସମଦଶାଭାଗୀ କରି ଅର୍ଥି ପ୍ରତ୍ୟର୍ଥୀଙ୍କ, (୨)
ସଙ୍ଗେ ସଙ୍ଗେ ଆସୁଛନ୍ତି ବ୍ୟବହାରାଜୀବ, (୩)
କରଣ, ପାଞ୍ଜିଆ, ସାକ୍ଷୀ, ପଦାତିକ ଆଦି, (୪)
ଶିବା ଗୃଧ୍ରରୂପୀ ଅଧିକରଣ-ମଶାଣେ । (୫)

---

(୧) ଚକ୍ଷୁ ସାରସ୍ୱତ—ସରସ୍ୱତୀଙ୍କ ଚକ୍ଷୁ । (୨) ମୋକଦ୍ଦମାରେ ବାଦୀ ପ୍ରତିବାଦୀ ଉଭୟ ପକ୍ଷର ସର୍ବନାଶ ହୁଏ । (୩) ବ୍ୟବହାରାଜୀବୀ—ଓକିଲ । (୪) କରଣ—ମୋହରିର, ପାଞ୍ଜିଆ—ମହାଫିଜ୍, ସାକ୍ଷୀ—ଗୁହା, ପଦାତିକ—ପେଆଦା । (୫) ଅଧିକରଣ—ବିଚାରାଳୟ, ଏହି ଉପମାରେ ଅର୍ଥୀ ପ୍ରତ୍ୟର୍ଥୀ ଶବସ୍ଥାନୀୟ ।

Digitized by PPRACHIN, SOA

ମୁହୁର୍ମୁହୁ ମାରି ହାଇ ଫୁଟୁକି ଫୁଟାଇ,
ଅର୍ଦ୍ଧ-ନିମୀଳିତ ନେତ୍ରେ ଆସୁଅଛୁ ମଠେ
'ଆଳସ୍ୟ' କର୍ମଠଗତ, କୁତ୍ସିତ ମୂରତ,
ସେବକେ ମଳିନବେଶ, ଧୂଳିରେ ଧୂସର
କେ ଆଗ୍ରହୀ ପରଛିଦ୍ର-ଅନ୍ୱେଷଣେ ସଦା,
ପରନିନ୍ଦା, ପରକୁତ୍ସା କଥନେ, ସର୍ଜନେ
ରସ କେହି, ମତ୍ତ ହୋଇ କେହି ଗଳ୍ପମୋଦେ
ଫୁତ୍କାରେ ଉଡ଼ାଏ କେତେ ରାଜା, ମହାରାଜା,
ସର୍ବଙ୍କ ପରୋକ୍ଷେ କେହି ନଦେଖି ନଶୁଣି
କହେ କେତେ ରଙ୍ଗେ କଥା ବାହାପିଆପଣେ,
କେହି ବା ଠାପୁଆପଣେ, ଧର୍ମଧ୍ୱଜ ଧରି
ପରଠାରୁ ସଦା ଅର୍ଥ-ଶୋଷଣ-ପ୍ରୟାସୀ
ଧର୍ମ ନାମେ ନିଜ ପେଟ ପୋଷଣ ସକାଶେ,
ଗ୍ଲୁଁ ଗ୍ଲୁଁ ମାର୍ଗେ ବସି ଅଡ଼ୁଅଛି କେହି,
ଦନ୍ତେ କେହି କାଟେ ତୃଣ, କେହି ମାଟିପରେ
ନଖେ ଲେଖେ ଏଣୁ ତେଣୁ ମନକୁ ଯା ଆସେ
ପେଣ୍ଡାବାଲ ମୁକୁଳାଇ ବସୁଅଛି କେହି,
ପଛେ ବସି ଆନ କେହି ମାରଇ ଉକୁଣି ।
ଏ ଆଦି ଅଛନ୍ତି ଯେତେ ମହା ସେନାପତି
କଳିର କଲ୍‌ବିଷଦଳେ, ସମସ୍ତଙ୍କ ଦେହ
ପ୍ରଚଣ୍ଡ ବିକ୍ରମେ କଳି ଆକ୍ରମିଲା ଆସି,
ଭାରତର ଧର୍ମପୁଞ୍ଜେ ଦୁର୍ଜ୍ଜୟପ୍ରତାପୀ
ଚିଲିକାର ନୀଳବକ୍ଷେ ଶ୍ୱେତ ହଂସାଳୀ
ଶରତେ ଯେ କାଳେ ଥାନ୍ତି ରତ ସନ୍ତରଣେ
କୁଣ୍ଠିତ ଚିଲିକା ବୀଚି-ପ୍ରହାରରେ ଅଟକି—

Digitized by PPRACHIN, SOA

ନଟିଆ ଜଙ୍ଘାରୁ ଯେବେ ସହସା ସଞ୍ଚାଣ (୧)
ମହାଝଡ଼ବେଗେ ଖସି ଆସେ ଅଧୋମୁଖେ
ବଜ୍ରନଖ ଅସ୍ତ୍ରେ ବ୍ୟସ୍ତ ପକ୍ଷପନ୍ତ ଯଥା
ପଳାନ୍ତି ଚୌଦିଗେ ଉଡ଼ି ଜୀବନବିକଳେ
କମ୍ପା ଯଥା କୋଣାର୍କର ଅନନ୍ତ ସୈକତେ (୨)
କେତକୀ-କୁନ୍ତଳ-କୁଦୁଁ କ୍ରୁଦ୍ଧ ମହାବଳ (୩)
ଆସିଲେ ତଳକୁ ଖସି ପଳାନ୍ତି ତରାସେ
ଦ୍ରୁତପଦେ କୃଷ୍ଣସାର ସଙ୍ଗେ ମୃଗବଧୂ
ସଦଳେ କଳିଙ୍ଗ ଦେଖି ବିକଳେ ଯେସନ
ଅସ୍ତ୍ରେ ବ୍ୟସ୍ତେ ଭାରତର ପୁଣ୍ୟପୁଞ୍ଜ ଯେତେ
ସଙ୍ଘ ଗୁମ୍ଫା ପଳାଇଣ ଲୁଚିଲେ କେ କାହିଁ,
ପୃଷ୍ଠରକ୍ଷୀ ଏକମାତ୍ର ଧର୍ମ-ସହଚର
'ସାହସ' ପନ୍ଥକୁ ରହି କଳିସୈନ୍ୟହାତେ
ହେଲା ବନ୍ଦୀ, ତହୁଁ କାମ କଲା ଆଜ୍ଞାମତେ
କିଙ୍କରସ୍ୱରୂପ ତାକୁ ନେଲା ନିଜଦଳେ,
ଧର୍ମିତ ପୌରବେ ଗୃହିଁ ଅନଳ ବିଷାଦେ
କହିଲେ "ହେ ବୀର, ଏବେ ଦେଖ କି ଦୁର୍ଗତି
'ସାହସ'ର ହେଲା କଳିଦାସନେ ଭାରତେ !
ଭାରତର ରକ୍ଷାପାଇଁ କ୍ଷତ୍ରିୟର ନେତା—
ଥିଲା ଆଜଯାଏ ଯେହୁ, ଏବେ ସେହୁ ସିନା

---

(୧) ନଟିଆ—ଚିଲିକାତୀରସ୍ଥ ପର୍ବତବିଶେଷ । (୨) କୋଣାର୍କ—ଅର୍କକ୍ଷେତ୍ର । ପୁରୀର ୧୧ କ୍ରୋଶ ଉତ୍ତର-ପୂର୍ବରେ ଅବସ୍ଥିତ । ଏ ଅଞ୍ଚଳରେ ସମୁଦ୍ରବେଳାରେ ସହସ୍ର ସହସ୍ର ହରିଣ ଦେଖାଯାନ୍ତି । ଏ ଅଞ୍ଚଳର କେତକୀ ବନ ବ୍ୟାଘ୍ରସଙ୍କୁଳ । (୩) ମହାବଳ—ପଠାଣଆବାଦ ।

Digitized by PPRACHIN, SOA

ଲମ୍ପଟର ସଖା ହେବ ଅଗମ୍ୟଗମନେ, (୧)
ପ୍ରାଚୀର, ପରିଖା, ପୁର ଲଙ୍ଘିଯିବାବେଳେ !"
ପଳାଇବାବେଳେ ଧର୍ମ ଯାଇଥିଲେ ଛାଡ଼ି
ହବ୍ୟପରିଚ୍ଛଦ 'ମୌନ' ନାମେ ଅଭିହିତ,
ଯାଉଁଛି ସେ ପରିଚ୍ଛଦ 'ଶାଠ୍ୟ' ମହୋଲ୍ଲାସେ
ଅଗ୍ନିଦ, ଗରଦ, କୂଟଲେଖ୍ୟର ଲେଖକ, (୨)
ହତ୍ୟାକାଂକ୍ଷୀ, ସିନ୍ଧିଆଳ, ଚୌର୍ଯ୍ୟଙ୍କି ଡାକି
ନିଜ ହସ୍ତେ ତାଙ୍କ ମୁଣ୍ଡେ ଦେଲା ଶାଢ଼ୀ ବାନ୍ଧି,
ଶାନ୍ତିରକ୍ଷକଙ୍କୁ ମାରି, ତାଙ୍କ ପରିଚ୍ଛଦେ
ନିଜବଳେ ସଜ୍ଜୀଭୂତ କରଇ ଯେସନେ
ଲୋକପ୍ରବଞ୍ଚନାପଟୁ ଦୁଷ୍ଟ ଦସ୍ୟୁପତି ।
ବିସ୍ମିତ ଅନ୍ତରେ ତହୁଁ କୌନ୍ତେୟ ସୁମତି
କହିଲେ, "ହେ ଦେବ ବଡ଼ ବିଷମ ଏ କଥା !
ଅସହ୍ୟ ଏ ଦୃଶ୍ୟ ମୋର ! ପବିତ୍ର ଭାରତେ
ବ୍ରାହ୍ମଣର ମନ୍ତ୍ରବଳେ କ୍ଷତ୍ରବୀର୍ଯ୍ୟ ବଳେ
ସୁରକ୍ଷିତ ଆର୍ଯ୍ୟ—ଦେଶେ ଘଟିବ ଅନୀତି
ଏତେ ସବୁ ? ଲାଗେ ବଡ଼ ଅସମ୍ଭବ ମୋତେ ।
ଶୁଣି ହବ୍ୟବାହ ଦେବ ନିଜ ହବ୍ୟତେଜେ
ସମ୍ବରଣ କରି ହାସ୍ୟେ କହିଲେ ଗୌରବେ
"ବ୍ରାହ୍ମଣ-କ୍ଷତ୍ରିୟ-ଘରେ ସବୁ ଅଗ୍ରେ ଯିବ।
ପଶିବ କୌଶଳେ କଳି ବର୍ଣ୍ଣକସ୍ୱରୂପେ
ପଶିଣ ଗୁପତେ ସେହି ଧର୍ମତରୁ ମୂଳେ

---

(୧) ଅର୍ଥାତ୍ ଭାରତବାସୀମାନେ ଦେଶରକ୍ଷା ବିଷୟରେ ଭୀରୁ ହେବେ ଏବଂ ପାପ କାର୍ଯ୍ୟରେ ସାହସୀ ହେବେ । (୨) ଗରଦ— ବିଷପ୍ରୟୋଗକାରୀ । କୂଟଲେଖ୍ୟ—ଜାଲ୍ ଦସ୍ତାବିଜ ।

Digitized by PPRACHIN, SOA

ଅଲକ୍ଷିତ କୋଶ ମୂଳ, ଅନ୍ତଃଧାର ହର
କଳ୍ପିଙ୍କୀ ସେ ଦ୍ରୁମର, ବୃଦ୍ଧ ଡାକ ଆଣି
ଯବନଙ୍କୁ, ତାଙ୍କ ହସ୍ତେ ଗଢ଼ାଇବ ଭୂମେ
ଅସାଧ୍ୟ ସେ ବ୍ୟାଧି, ଯାହା ଭାରତର ଦେହେ
ଘୋଟିବ, ଜାଣି ନଥିବ ଧ୍ୟାନେ ଧନ୍ୱନ୍ତରି !(୧)
ସୁଶ୍ରୁତର ଶଲ୍ୟ-ତନ୍ତ୍ର ହାରିବ ସେ ବ୍ରଣେ ! (୨)
ନୁହଇ ଉଚିତ ଆଉ ରହିବାର ଏବେ
ବହୁଦିନ ଏ ଭାରତେ, ତୀର୍ଥାଟନ ବ୍ରତ
ଧାରି, ହେ ଭାରତ, ବେଗେ ଯାଅ ହିମାଚଳେ, (୩)
ଧର୍ମେ ଏକତାନମତି, ଧର୍ମ-ପକ୍ଷପାତୀ
ତୁମ୍ଭେ, ଘୋର ଅନାଚାର ଦମନେ ଅକ୍ଷମ
ହୋଇ ଦଗ୍ଧ ହେବ ସିନା ଆପେ ଅନୁତାପେ,
ବନ୍ଦୀ ପଡ଼ ଯେସନ୍ତେ ପତ୍ନୀ-ଲାଞ୍ଛନା-ଦର୍ଶନେ,
ଆସୁଛି ପାପର ବନ୍ୟା, ଭାରତ ଭରସା
ପାପ-ଜଳେ ଦ୍ୱୀପରୂପୀ ମହତ ହେ ଜନ
ବୁଡ଼ିଯିବ ସିନା, ଆହା, ଏ ଘୋର ପ୍ଲାବନେ,
ତୁମ୍ଭପରି ସୁଚନ୍ଦନ ଦ୍ରୁମ ପାଇଁ ଆଉ
ନ ଥିବଟି ଠାବ ଏହି କଷ୍ଟବଲ୍ଲୀବନେ,
ଧର୍ମ-ଅନୁଷ୍ଠାନବ୍ରତେ ସହାୟ୍ୟ ବହୁନେ
ସାଧୁର ଜୀବନ ହେବ ମହା ବିଡ଼ମ୍ବନା,
ମହା ଅନର୍ଥର ହେତୁ ହେବ କାଳବଶେ
ଧୈର୍ଯ୍ୟ,ବୀର୍ଯ୍ୟ, ପ୍ରତିଭାଦି ମହତ୍ତ୍ୱ ଯା କିଛି

---

(୧) ଧନ୍ୱନ୍ତରି ଆର୍ଯ୍ୟବୈଦ୍ୟଙ୍କର ଆଦି ପ୍ରଣେତା । (୨) ସୁଶ୍ରୁତ—ଚିକିତ୍ସାଶାସ୍ତ୍ର-ପ୍ରଣେତା ଋଷି । ଶଲ୍ୟତନ୍ତ୍ରର (Surgery) ଆଦି ପ୍ରଣେତା । (୩) ଭାରତ—ଭରତବଂଶୋଦ୍ଭବ, ଯୁଧିଷ୍ଠିରଙ୍କ ସମ୍ବୋଧନ ।

Digitized by PPRACHIN, SOA

ପୁରୁଷର, କାପୁରୁଷ-ପ୍ଲାବିତା ଭାରତେ;
କଳିଶିଷ୍ୟ-କୁକ୍ଷିମ୍ଭରି-ଦ୍ୱିଜାତି-ଦୁଷ୍କୃତି (୧)
ଯୋଗେ ନାରଖାର ହେବ ଅଚିରେ ଏ ମର୍ତ୍ତ୍ୟ;
ସେହି ଦେଶ, ସେହି ଗିରି ସେହି ନଦନଦୀ,
ନଗର, ନଗରୀ, ତୀର୍ଥ, ଆଶ୍ରମାଦି କରି
ହେବେ ଥିବେ ପୂର୍ବପରି, ମାନବେ କେବଳ
ନାମକୁ ମାନବ ରହି, ପଶୁଠାରୁ ହୀନ
ହୋଇଯିବେ ଯୁଗଧର୍ମେ ଭାରତ ମଣ୍ଡଳେ ।"

———

## ପଞ୍ଚମ ସର୍ଗ

ଆଶାସ୍ପି-ଉତ୍କଳ ଆଶା-କିଶୋରପାଦପ, (୨)
ଗୁଣାତ୍ମ ରାମଚନ୍ଦ୍ର, ଭଞ୍ଜକଞ୍ଜରବି (୩)
ଭଞ୍ଜକୁଳ-ଧ୍ୱଜ-କୃଷ୍ଣଚନ୍ଦ୍ର-ଜ୍ୟେଷ୍ଠାତ୍ମଜ,
ଶୁଣିଲି ମୁଁ ବହୁମୁଖୀ ଜନଶ୍ରୁତି ମୁଖେ,
ନଗରେ [illegible] କଳି ପଶନ୍ତେ ପ୍ରଥମେ,
ଅବିରତ ଦାନବାରି-ପିଚ୍ଛିଳ ପ୍ରାଙ୍ଗଣେ (୪)
ସେ ନଗରେ ଚାଲୁଁ ଚାଲୁ ଅତି ସାବଧାନେ
ଖସିଲା ତା ଗୋଡ଼, ଦୁଷ୍ଟ ପଡ଼ିଲା କଚାଡ଼ି

---

(୧) କୁକ୍ଷିମ୍ଭରି — ସ୍ୱୋଦର ପୋଷଣରେ ବ୍ୟସ୍ତ । (୨) ଆଶାସ୍ପୀ — ଆଶାଯୁକ୍ତ । (୩) ରାମଚନ୍ଦ୍ର — ମୟୂରଭଞ୍ଜାଧିପତି ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଦେଓ । (୪) ଦାନଦେବା ସମୟରେ ଯେଉଁ ଜଳ ଦେବାକୁ ହୁଏ ତଦ୍ଦ୍ୱାରା ପିଚ୍ଛିଳ । ବ୍ରାହ୍ମଣ-ମାନଙ୍କ ପ୍ରତି ମୟୂରଭଞ୍ଜ ରାଜବଂଶର ବଦାନ୍ୟତା ଉତ୍କଳପ୍ରସିଦ୍ଧ ।

Digitized by PPRACHIN, SOA

ଊଷ୍ଣନେ, ବାହୁଡ଼ ତେଣୁ ଗଲ ଅଘମାନେ,
ସତ୍ୟ କହେ ଏ କାହାଣୀ ? ମିଥ୍ୟା ବୋଲି ଅବା
କେମନ୍ତେ ବୋଲିବ ? ଯେଣୁ ଦେଖୁଚ ନୟନେ
ପଶି ନାହିଁ ଦୁଷ୍ଟ ତୁମ ହୃଦୟ କୁସୁମେ
କୀଟରୂପେ, କୂଟନୀତି ପ୍ରୟୋଗ ଅଗ୍ରଣୀ, (୧)
'ମଦନ' 'ଆଲସ୍ୟ' ନାମେ କେନା ସେନାପତି
ଛନ୍ତି ଯେହୁ କଳି ସୈନ୍ୟେ ବଡ଼ ପଟୁ ଯେହୁ
ଜିଣିବାକୁ ରାଜକୁଳ, ଜିଣି ଅବହେଳେ
ଅଳ୍ପକାଳେ ଶତ ଶତ ଭୂପ ଭୂଧରତେ,
କଳି-ରାଜସଭାତଳେ ବନ୍ଧାଇଲେ ଶାଢ଼ୀ;
ତରୁଣ ଯୌବନ, ପୁଣି ରୂପ ଅପ୍ରତିମ,
ଗର୍ଭେଶ୍ୱରପଣ ଦେଖି ତୁମ୍ଭର ଏ ବେଳ, (୨)
ପାଞ୍ଚିଥିଲେ ଗୁପ୍ତେ ଏହି ତିନିମାର୍ଗେ ପଶି (୩)
ତୁମ୍ଭ ହୃଦ ଦୁର୍ଗଚୂଳେ ପୋତିବେ ପତାକା,
ମାତ୍ର ସବୁସ୍ଥଳେ ଦେଖି ବିବେକ ପ୍ରହରୀ
ପ୍ରତିମାର୍ଗେ ବ୍ୟସ୍ତେ ଦୂରେ ପଳାଇଲେ ଦୂରେ
'କ୍ରୋଧ'ଟି ଦୁର୍ଜୟ ଶତ୍ରୁ ଜନେ ମୃତ୍ୟୁଞ୍ଜୟ
କାମେ ଜିଣିବାକୁ ଯାଇ ହାରିଲେ ଯା ପାଶେ
ନରକୁଞ୍ଜର ପ୍ରଭୁପଣ ସତ୍ତ୍ୱେ ସେ ତୁମ୍ଭର
ଆଣି ନ ପାରିଲା ଚକ୍ଷୁରୁ ନେତ୍ରେ ଅରୁଣିମା (୪)

---

(୧) କୂଟନୀତ ପ୍ରୟୋଗ ଅଗ୍ରଣୀ ଦୁଷ୍ଟ କବର ବଶେଷଣ । (୨) ଗର୍ଭେଶ୍ୱର—ଗର୍ଭରୁ ଅର୍ଥାତ୍ ଜନ୍ମରୁ ରାଜା । (୩) ଯୌବନ, ରୂପ ଏବଂ ଗର୍ଭେଶ୍ୱରତ୍ୱ—ପାପର ତିନୋଟି ପ୍ରଶସ୍ତ ମାର୍ଗ । (୪) ତରୁଣବୟସ୍କ ମହାରାଜ ଶ୍ରୀରାମଚନ୍ଦ୍ରଙ୍କୁ କ୍ରୋଧାଧୀନ ହେବାର ପ୍ରାୟ ଦେଖାଯାଇନାହିଁ ।

Digitized by PPRACHIN, SOA

ସ୍ୱଦୋଷଦର୍ଶିତାରୂପ ପ୍ରଚ୍ଛନ୍ନ କଞ୍ଚୁକେ
ଆବୃତ ତୁମ୍ଭର ହୃଦ ନଜାଣି ଏ କଥା (୧)
ନିଜ ତୂଣ ଶୂନ୍ୟ ପିନା କଲ ସେ ବିଫଳେ (୨)
ଖଳ କାନକୁହାଆଦ୍ଧ ଈର୍ଷ୍ୟା ଉପାସକେ
ପୂର୍ଣ୍ଣ ସଦା ରାଜସଭା 'ଈର୍ଷ୍ୟା' ଏହା ଜାଣି
ଚାଳ ରହିଥିଲ ତୁମ୍ଭ ହୃଦେ ପଶିବାକୁ
ତାଙ୍କ ଯୋଗେ ବୃଥାହେଲା ଈର୍ଷ୍ୟାର ସେ ଆଶା
ଯେଣୁ ତୁମ୍ଭେ ଏକ କର୍ଣ୍ଣେ କାନକୁହା ବାଣୀ
ଶୁଣି ଅନ୍ୟ କର୍ଣ୍ଣ ମୁକ୍ତ ରଖିଲ ଗୁପତେ
ଶୁଣିବାକୁ ଅଭିଯୁକ୍ତ କଥା ଯଥାକାଳେ,
ଆଉ ଯେତେ ଥିଲେ କଳି-ମୁଖ୍ୟ-ସେନାପତି
କାମ କ୍ରୋଧ ଆଦିଙ୍କର ଦେଖି ଏ ଦୁର୍ଦ୍ଦଶା
ମୁଣ୍ଡେ କରଦେଇ ସର୍ବେ ବସିଛନ୍ତି ଦୂରେ
ନିରାଶେ ତୁଟିଛି ମନୁ ଦାରୁଣ ଜିଗୀଷା;
ମାତ୍ର ଏ ଦୁରନ୍ତଦଳେ ଛଳେ ନାହିଁ ପ୍ରତେ
ବିଶ୍ୱାସଘାତକ, ସିଏ ଛିଦ୍ର ଲୋଡ଼ିବାର
ନିତ୍ୟବ୍ରତ ଏହାଙ୍କର କଳି ରାଜପଣେ
ରହିବା ଉଚିତ ତେଣୁ ଜାଗରୂକ ହୋଇ
ତୁମ୍ଭର ହେ ବୀର ଏବେ ତରୁଣ ଯୌବନେ
ସ୍ୱରବ ନିରତେ ପ୍ରଜାପୁଞ୍ଜ ରଣଭାର
ମୁଣ୍ଡାଇଛ ମୁଣ୍ଡେ ରାଜମୁକୁଟର ବ୍ୟାଜେ
ସ୍ୱରବ ନିରତେ ତୁମ୍ଭ ଜନ୍ମ ଭବତଳେ

---

(୧) ସ୍ୱଦୋଷଦର୍ଶୀ ଲୋକେ ଅନ୍ୟ ଉପରେ ପ୍ରାୟ କ୍ରୋଧ କରନ୍ତି ନାହିଁ । ବାଲ୍ମୀକି ରାମଚନ୍ଦ୍ରଙ୍କ 'ସ୍ୱଦୋଷଦର୍ଶୀ' ଏହି ବିଶେଷଣ ଦେଇଛନ୍ତି । (୨) ତାହାର ସମସ୍ତ ଶର ବିଫଳ ହେଲା ।

Digitized by PPRACHIN, SOA

ନୁହଇ ହେ କ୍ଷଣଜନ୍ମା ଏକା ତୁମ୍ଭ ପାଇଁ
ତାରକାଦଳର ଜ୍ୟୋତି ତାଙ୍କ ପାଇଁ ସିନା,
ମାତ୍ର କି ଚନ୍ଦ୍ରର ପ୍ରଭା ଏକା ଚନ୍ଦ୍ର ପାଇଁ
ଉତ୍କଳର ଆଶା-ନଭେ ତୁମ୍ଭ ଶୁଭକ୍ଷଣେ,
ହେ ରାଜେନ୍ଦ୍ର, ବିରାଜୁଛ ଦ୍ୱିଜରାଜରୂପେ (୧)
ରାଜା ରାଜ୍ୟାଶ୍ରମଋଷି କବିର ଏ ବାଣୀ (୨)
ଫଳି ଆସୁଅଛି ତୁମ୍ଭ ପବିତ୍ର ଜୀବନେ;
ଭାଗ୍ୟେ, କର୍ମେ, ବେନାବରେ ସୁଲକ୍ଷଣଯୁକ୍ତ
ତୁମ୍ଭପରି ପୁତ୍ର ପାଇ ପୁତ୍ରବତୀ ଆଜି
ଚିର ଅଭାଗିନୀ ଏହି ଉତ୍କଳ ଜନନୀ,
ହାରି ନୀଳା ଆଦି ଗ୍ରାମ୍ୟ ଆଭରଣଭାରେ
ଭାରାକ୍ରାନ୍ତ ଭୂପଦଳେ, ନରଭେ ଦୁର୍ଲ୍ଲଭ
ବିଦ୍ୟା ଦୟା ବିନୟାଦି ଅଗ୍ରାମ୍ୟ ଭୂଷଣେ
ଭୂଷିତ ତୁମ୍ଭଙ୍କୁ, ଭଞ୍ଜ-ରାଜଲକ୍ଷ୍ମୀସହ
ଦେଖଇ ଉତ୍କଳ, ଆହା ଯେସନେ ନଶୀଥିନୀ (୩)
ଧ୍ରୁବଙ୍କୁ ଦେଖନ୍ତି କୋଟି ତାରା ନେତ୍ରେ ଫେଡ଼ି,
ଲମ୍ଭା ଯଥା ଦେବଦଳ ଜଳଧିମନ୍ଥନେ
ହେରିଲେ ହରଷେ ଦିବ୍ୟ ଜ୍ୟୋତିପୂର୍ଣ୍ଣଧାରା
ସିନ୍ଧୁବାରି ସମୁତ୍ଥିତ ପାରିଜାତ ତରୁ
ସଙ୍ଗେ ବିଶ୍ୱବନ୍ଦ୍ୟା ଦେବୀ ଇନ୍ଦିରା ସୁନ୍ଦରୀ
ଜ୍ୟୋତିର୍ମୟୀ ଜ୍ୟୋତିର୍ମୟ-କମଳ-ବାସିନୀ
କଳ୍ପତରୁ ଲଭି ଯଥା ତ୍ରିଦିବ-ଦୁର୍ଗତି

(୧) ଦ୍ୱିଜରାଜ—ଚନ୍ଦ୍ରମା । (୨) କାଳିଦାସଙ୍କର ଉକ୍ତି । ରାଜ୍ୟରୂପ ଆଶ୍ରମର ରାଜଋଷି ଅଟନ୍ତି । ବିଳାସିତା ରାଜଧର୍ମ ନୁହେଁ । (୩) ନଶୀଥିନୀ—ରଜନୀ ।

Digitized by PPRACHIN, SOA

ଯୁଦ୍ଧଗଲ, ଯୁଦ୍ଧ ଯାଉ ଉତ୍କଳ ମାତାର,
ଭକ୍ତକବି, ତୁମ୍ଭଯୋଗେ ଦୁର୍ଯ୍ୟୋଗ-ଜଡ଼ିତା-
ଟର ନିରାନନ୍ଦ ମୂର୍ତ୍ତି ଦାରୁଣ-ବିପାକେ
ଝରୁଅଛୁ ନୈରାଶ୍ୟର ଅତଳ କୁହରେ
ତଥାପି ଯଶସ୍ୱୀ ତୁଚ୍ଛ ସୁଯଶ-ଗୌରବେ
ଜଡ଼କଣ୍ଠ ମୋର ଆଜି ମୁଖର ସଙ୍ଗୀତେ
ପଲ୍ଲବ ମୁକୁଳ ଫୁଲ ମୃଦୁଳେ ଦୋଳାଇ
କୁଞ୍ଚାଇ ତରଙ୍ଗମାଳେ ତଟିନୀର ବେଣୀ
ମୁଖର ନିକୁଞ୍ଜବନେ ବନପ୍ରିୟକୁଳେ,
ସୁରୁସ୍ୱରୁଁ ସ୍ୱନେ ଯେବେ କେଦାରେ କାନ୍ତାରେ
ପ୍ରସରେ ମଳୟସ୍ରୋତ ପରିମଳସଖା,
ଉଲ୍ଲାସେ ଦୁଃଖର ଘଣବର୍ମ୍ମ ତକ ଲଭି
ପିଞ୍ଜରବିହଙ୍ଗ ଯଥା ଭାବେ କ୍ଷଣେ କ୍ଷଣେ,
ତୁମର ଆଦେଶେ, ବୀର, ଏ ମହାଗୀତିକା
ଗାଇବା ଆଶୟେ ଏବେ ଧରିଛୁ ମୁଁ କରେ
ଚିରମୂକ ବୀଣା ମୋର ସିକ୍ତ ନେତ୍ରଜଳେ
ଆଦ୍ୟନ୍ତ ଏ ଗୀତ ଆସୁ ଦିବ୍ୟ ଅବଧାନେ ।
ଗୃହସ୍ଥ ସଞ୍ଚୟପଟ୍ଟ ଯତନେ ସମ୍ପାଦ
ସମ୍ପତ୍ତିକ, ଠୂଳକରି ରଖି ଆତ୍ମଘରେ,
ନିଶ୍ଚିନ୍ତ ରହଇ ଅଗ୍ନି ଭୟୁଁ ମନେ ମନେ,
ଦେବେ ଯେବେ ଦେଖେ ବହ୍ନି ଆତ୍ମମଣ୍ଡତଳେ
ଗୃହପତି, କାତର ସେ ହୁଅଇ ଯେସନେ,
ବିପ୍ର, କ୍ଷତ୍ରିୟର ଭାବ ଅବନତି ଶୁଣି
କାତର ତେସନେ ହେଲେ କୌନ୍ତେୟସୁମତି, (୧)

---

(୧) କୌନ୍ତେୟ—କୁନ୍ତୀପୁତ୍ର ଯୁଧିଷ୍ଠିର ।

Digitized by PPRACHIN, SOA

ସାଶ୍ରୁ ନେତ୍ରେ କରଯୋଡ଼ି ବୈଶ୍ୱାନର ପଦେ
ପଡ଼ିଣ କହିଲେ, "ପ୍ରଭୁ ତ୍ରିକାଳଦରଶୀ
ତୁମ୍ଭେ ଯେଣୁ, କହ ମୋତେ କିରୂପେ ଭାରତେ
ଘଟିବ ଏ ମହାନର୍ଥ, ସୁଜଳା ସୁଫଳା
ଏ ଶସ୍ୟଶ୍ୟାମଳା ଧରା ପରହାତେ ଦେଇ
ପର ପଦାନତ କି ହେ ହେବେ ଆର୍ଯ୍ୟସୁତେ
ଏ ମର୍ତ୍ତ୍ୟନନ୍ଦନ, ଦେବ ! ହେବ କହେ ହତେ
ଭୀଷଣ ଦାନବଙ୍କର ଦ୍ୱାର ଅଗଣା ?
ଆର୍ଯ୍ୟସ୍ୱାଧୀନତା-ରବି ଅସ୍ତମିତ ହୋଇ
ଭାରତ କି ପରିଣତ ହେବ ଅବଶେଷେ
ଊର୍ଜସ୍ୱଳ ଆର୍ଯ୍ୟଙ୍କର ଗୌରବ-ଶ୍ମଶାନେ ?"
ଉତ୍ତରିଲେ ଅଗ୍ନି, "ବୀର, ଘଟିବ ନିକର
କହିଲି ଯା. କେବେ ତାହା ନୋହିବ ଅନ୍ୟଥା
ସ୍ୱାଧୀନତା ବୋଲି ଯାହା ବୋଇଲ ଆପଣେ,
ସେ କେବଳ ଷଡ଼ରିପୁ ପ୍ରଭୁତାର ଛାୟା, (୧)
ସେ ପ୍ରଭୁତା ଗଳିଗଲେ କାଳର କୌଶଳେ
ବଳେ ଯିବ ସ୍ୱାଧୀନତା, ପିଣ୍ଡ ସଙ୍ଗେ ଯଥା
ଗଳିଯାଏ, ପାଣ୍ଡୁନାଥ, ସେ ପିଣ୍ଡର ଛାୟା,
ରିପୁ-ଅଧୀନତା-ସଙ୍ଗେ ପର-ଅଧୀନତା
ଆସିବ ସ୍ୱଭାବେ, ବେଗେ ଉପସର୍ଗ ପରି
ସାରସ୍ୱତ ବ୍ରାହ୍ମଣର ବାଣୀ-ଆରାଧନା (୨)
ଚିରବ୍ରତ, ଏବେ ନେହି ଦେବୀ-ଅବହେଳେ

---

(୧) ଷଡ଼ରିପୁପ୍ରଭୁତା—ଷଡ଼ରିପୁ ଉପରେ ପ୍ରଭୁତ୍ୱ ଅର୍ଥାତ୍ ପ୍ରକୃତ ସଂଯମୀ ନ ହେଲେ ଲୋକେ ସ୍ୱାଧୀନ ପଦବାଚ୍ୟ ହୁଅନ୍ତି ନାହିଁ । (୨) ସାରସ୍ୱତ —ସରସ୍ୱତୀ ଭକ୍ତ ।

Digitized by PPRACHIN, SOA

ବ୍ରହ୍ମତର୍ଯ୍ୟ ତେଜ କହେ ହେବେ କଳିଯୁଗେ
ଲୋଭ-ମୋହ-ଜାଲେ ପଡ଼ି ଅବଦ୍ୟା-ସେବକ,
ଚନ୍ଦ୍ରିକା-ପୀୟୂଷ-ପାୟୀ-ଚକୋର-ଔରସେ
ଜନ୍ମିଲେ ଉଲୂକ ଅମା-ତମିର-ପ୍ରଣୟୀ,
ଅକର୍ମଣ୍ୟ, ଦ୍ୱିଜାତର ହେବ ଅବଶେଷେ
ଷଟ୍‌କର୍ମେ ଷଷ୍ଠକର୍ମ ଏକମାତ୍ର ବ୍ରତ, (୧)
ଶମ, ଦମ ନୟମାଦ ସବୁ ଦୂରେ ଯାଇ
ଏକମାତ୍ର ଯଜ୍ଞସୂତ୍ର ଗୁଣ ଥିବ ଗୁଣେ, (୨)
ଧର୍ମକୁ କରବେ ବସ୍ତେ ଜୀବନଜୀବିକା,
ମୂଢ଼ପଣେ ଏହି ଜାତ ଏ ମର୍ତ୍ତ୍ୟମଣ୍ଡଳେ,
( କୂପକୁ ସେ କୂପବାସୀ ମଣ୍ଡୂକ ଯେସନ )
ଏକମାତ୍ର ଦେଶ ଏହି ଭାରତକୁ ମଣି ,
ଭାରତବାସୀଙ୍କ ଦୃଢ଼ କର୍ମକାଣ୍ଡ-ଜାଲେ
ବାନ୍ଧିବେ, ସେ ଜାଲେ ପୁଣି ନଜେ ହେବେ ବନ୍ଧ
ସେ ଜଟିଳ କର୍ମକାଣ୍ଡେ ହୋଇ ବଦ୍ଧଜାତ,
ଧର୍ମର ଯେ ସାର, ତାକୁ ହୁଡ଼ି ଆତ୍ମସୁଖେ
ଯାପିବେ ଜୀବନ ଧର୍ମ-ତୁଷେ ତୁଷ୍ଟହୋଇ (୩)
ଯଜମାନପାଇଁ ଖାତ ଖୋଳଣ ଉଦ୍ୟମେ
ତହିଁ ! ଯଜମାନଙ୍କର ବଗ୍ରଷ ଫମ୍ପାତେ (୪)
ବାଟ ନ ପାଇବେ ନଜେ ପଳାଇବାପାଇଁ,

---

(୧) ଷଟ୍‌କର୍ମ—ଯଜନ, ଯାଜନ, ଅଧ୍ୟୟନ, ଅଧ୍ୟାପନା, ଦାନ, ପ୍ରତଗ୍ରହ । ସବୁ ଯାଇ କେବଳ ଶେଷକର୍ମ ଅର୍ଥାତ୍ ପ୍ରତଗ୍ରହ ରହିବ, ଅର୍ଥାତ୍ ବ୍ରାହ୍ମଣମାନେ ଭିକ୍ଷୋପଜୀବୀ ହେବେ । (୨) ପ୍ରଥମ ଗୁଣ ଶବ୍ଦର ଅର୍ଥ ରଜ୍ଜୁ । ଦ୍ୱିତୀୟ ଗୁଣ ଶବ୍ଦର ଅର୍ଥ ଧର୍ମ । (୩) ବାହ୍ୟ ଅନୁଷ୍ଠାନାଦ ଧର୍ମର ଅସାର ଅଂଶ । (୪) ବଗ୍ରଷ ସମ୍ପାତ—ବୃହତ୍ ପତନ ।

Digitized by PPRACHIN, SOA

ଯଜମାନ ସଙ୍ଗେ ହେବେ ପ୍ରୋହିତ ସେ ଖାତେ,
ଅକ୍ଷୁଣ୍ଣ ରଖିବା ଲାଗି ସ୍ୱଜାତି-ପ୍ରଭୁତା
ଯଜମାନ ଜାତିଙ୍କର ଐକ୍ୟ ଭାଙ୍ଗିଦେଇ
ଶତ ଶତ ଉପଜାତି ସୃଜିବେ ବ୍ରାହ୍ମଣେ
ଭେଦବୁଦ୍ଧି ଉପୁଜାଇ ମାନବେ ମାନବେ
ସମାଜେ ଏ ହୀନଭାବ ଘୃଣାରୂପେ ପଶି
ଅସ୍ଥି ମଜ୍ଜା ଶୋଷି ତାକୁ କରିବ ଜର୍ଜର,
ଏକ ଆରେକର ସ୍ପର୍ଶେ ମଣିବ ଅଶୁଚି
ଆପଣାକୁ, ଅପବିତ୍ର ପଶୁଠାରୁ ପୁଣି
ହୀନ କରି ମାନବକୁ ମଣିବେ ମାନବେ,
କ୍ରମେ ଗୃହବିଗ୍ରହର ସୂତ୍ରପାତ ହୋଇ
ଏହିରୂପେ ଛିନ୍ନଭିନ୍ନ ହେଲେ ଆର୍ଯ୍ୟଜାତି,
ବିଶ୍ୱପୂଜ୍ୟ ଆର୍ଯ୍ୟଙ୍କର ଏହି ପୂତତମ
ଭୂମି ହେବ ଛିଦ୍ରାନ୍ୱେଷୀ ଶତ୍ରୁର ଆମିଷ, (୧)
ବ୍ରାହ୍ମଣର ତପଃଫଳେ ହୋଇଥିଲା ଯେହୁ
ଭାରତର ଲୀଳାକ୍ଷେତ୍ର, ସେ ଭାରତ ଏବେ
ହେବ ପରିଣତ ସେହି ବ୍ରାହ୍ମଣର ପାପେ
ଅଜ୍ଞାନ-ଅନ୍ଧାରମୟ ଭୀଷଣ ଶ୍ମଶାନେ !
'ମଦନ', 'ଆଳସ୍ୟ', 'ଈର୍ଷ୍ୟା', ତିନ ସେନାପତି
ପଶିବେ ରଜନ୍ୟବୃନ୍ଦେ କଲି-ଆଜ୍ଞାମତେ,
ଅମନ୍ତ୍ରସାଧନ ହେତୁ ଦୃଢ଼ପ୍ରତିଜ୍ଞତା
ସେ ସାହସ ତୃଣ-ପ୍ରାଣ ଦେଶରକ୍ଷାବ୍ରତେ (୨)
ସେ ପ୍ରଭାବ ଶସ୍ତ୍ର ମନ୍ତ୍ର ହେବନ୍ତି ମୋର ଶିକ୍ଷା;

(୧) ଆମିଷ—ଶିକାର । (୨) ଯେ ସାହସ ଦେଶରକ୍ଷା ସକାଶେ ନିଜର ପ୍ରାଣକୁ ତୃଣବତ୍ ମଣେ ।

Digitized by PPRACHIN, SOA

ବଜ୍ରସାର ସେହି ବୀର୍ଯ୍ୟ ଥିଲା ଆଜିଯାଏ
କ୍ଷତ୍ରିର ଯା ପ୍ରିୟଧର୍ମ ସବୁ ଯିବ ଚଳି
ସବୁ ଯାଇ ଅଭିମାନ ରହିବ କେବଳ
ସରସେ କର୍ଦ୍ଦମ ଯଥା ରହେ ଅବଶେଷେ
କମଳ କୁମୁଦ ସଙ୍ଗେ ଜଳ ଗଲେ ଶୁଖି,
ଜୀବନ୍ତ ଭାରତଦୁର୍ଗରୂପୀ ଏହି ଜାତି (୧)
ବୀର୍ଯ୍ୟହୀନ ଅକର୍ମଣ୍ୟ ହେବେ ଅଳ୍ପଦିନେ
ଅଳ୍ପଦିନେ ଦ୍ରୋଣାଚାର୍ଯ୍ୟ-ଶିଷ୍ୟ-ବଂଶଧରେ
ଆଚରିଲେ ଯୁଦ୍ଧବିଧି କେବଳଗଳପେ,
ଧନୁ, ଗଜାଙ୍କୁଶ, ଅସି ଗଦା ଆସ୍ଫାଳନେ
କର୍କଶ ଯାଙ୍କର ହସ୍ତ ତାଙ୍କର ସନ୍ତତି
ଭୀରୁ, ପ୍ରାଣରଙ୍କ, ଆହା ହୋଇ କାଳବଶେ (୨)
ହସ୍ତୀ ଦେଖି ଦଶହାତ ଅଶ୍ୱ ଦେଖି ଶତ-
ହସ୍ତ ଦୂରେ ଯାଇ ଉଭା ହେବେ ମହାତ୍ରାସେ
ନିଜ ସନ୍ତତିଙ୍କୁ ପୁଣି ଆଗ୍ରହେ ଅଣାଇ
ଶ୍ଳୋକରୂପେ ଶିଖାଇବେ ଏହି ଭୀରୁନୀତି,
ଏ ମହାପ୍ରତାପୀ ଜାତି ହୀନୁ ହୀନତର
ହୋଇଯିବେ ଦିନୁ ଦିନ କଳିଉତ୍ପୀଡ଼ନେ
ପୂର୍ବତେଜ ଅବଶିଷ୍ଟ ଥିବ ଯାହା କିଛି
ଭିଆଇବ ହେଦ୍ଧ ତେଜେ ଯୁଦ୍ଧ ପରସ୍ପରେ
'ଈର୍ଷ୍ୟା' ଅସି, ରତ ହୋଇ ସେ ବୃଥା ବିଗ୍ରହେ
ବହିରାକ୍ରମଣଭୟୁ ପ୍ରତିକାର-ବାର୍ତ୍ତା
ଭାଳିବାକୁ ନ ଥିବଟି ଅବସର ତିଳେ

(୧) କ୍ଷତ୍ରିମାନେ ଭାରତବର୍ଷର ଜୀବନ୍ତ ଦୁର୍ଗପରି ଥିଲେ । (୨) ପ୍ରାଣରଙ୍କ — ପ୍ରାଣରକ୍ଷା ନିମନ୍ତେ ଆତୁର ।

Digitized by PPRACHIN, SOA

ଉପରେ ଉଡ୍‌ଡୀୟମାନ ଯବନ-ଗରୁଡ଼େ
ଦେଖି ଯୁଦ୍ଧ ଯୁଝୁଥିବେ ଗଜ କୂର୍ମ ପରି
ଭାବୀ ଅନ୍ଧ ବର୍ତ୍ତମାନ—ସର୍ବସ୍ୱ ବର୍ବରେ (୧)
ସର୍ବେ ଆତ୍ମଚନ୍ତାରତ ସର୍ବେ ଜାତିଦ୍ରୋହୀ,
ଆତ୍ମରକ୍ଷାବ୍ରତୀ ଜନ୍ମଭୂମି-ଅଧଃ-ପାତେ;
ଭାରତର ନାନା ଅଂଶେ ଛନ୍ନ ଆର୍ଯ୍ୟ ଯେତେ
ଭିନ୍ନ ଭିନ୍ନ ନାମ ବହି, ଆର୍ଯ୍ୟଟି ସରବେ,
ହୋମାନଳ, ଦାବାନଳ, ବାଡ଼ବ-ଅନଳ
ଏ ଆଦି ବିବିଧ ନାମେ-ପ୍ରସିଦ୍ଧ ଜଗତେ .
ଯଥା ମୂର୍ଦ୍ଧେ, କୁରୁବର୍ଷେ, ପାଞ୍ଚାଳେ ଅବଧେ (୨)
କାଶ୍ମୀରେ, ନେପାଳେ, ପୁଣି ମଗଧେ, ମୈଥିଳେ,
ଅଙ୍ଗେ, ବଙ୍ଗେ ,ଉତ୍କଳେ ପୁଣି କଳିଙ୍ଗେ ଦ୍ରାବିଡ଼େ,
କର୍ଣ୍ଣାଟେ, କେରଳେ, ପାଣ୍ଡ୍ୟେ, ମହାରାଷ୍ଟ୍ରେ, ଗୌଡ଼େ,
ବିଦର୍ଭେ, ନିଷଧେ, ମତ୍ସ୍ୟେ, ତ୍ରିଗର୍ତ୍ତେ, ଗୁର୍ଜ୍ଜରେ,
ଗାନ୍ଧାରାଦି କରି ସିନ୍ଧୁ-ମାତୃକ ପ୍ରଦେଶେ (୩)

---

(୧) ଭାବୀ ଅର୍ଥାତ୍ ଭବିଷ୍ୟତ ଅନିଷ୍ଟ ପ୍ରତି ଅନ୍ଧ କେବଳ ବର୍ତ୍ତମାନ ଅର୍ଥାତ୍ ଉପସ୍ଥିତ ସ୍ୱାର୍ଥ ଯେଉଁମାନଙ୍କର ସର୍ବସ୍ୱ। ଗଜ କଚ୍ଛପ ପରସ୍ପର ଯୁଦ୍ଧ କରୁ କରୁ ଉଭୟେ ଗରୁଡ଼ଙ୍କର ଆମିଷ ହୋଇଥିଲେ। ଆର୍ଯ୍ୟମାନେ ସେହିପରି ଆପଣା ମଧ୍ୟରେ କଳହ କରି ଦୁର୍ବଳ ହୋଇ ଯବନର ଅଧୀନ ହେବେ। (୨) ଜାତିର ମଙ୍ଗଳରେ ବ୍ୟକ୍ତିର ମଙ୍ଗଳ, ଏ କଥା ଆର୍ଯ୍ୟମାନେ ବିସ୍ମୃତ ହୋଇ କେବଳ ନିଜ ଉପସ୍ଥିତ ସ୍ୱାର୍ଥ ଲୋଡ଼ିବେ । (୩) ଅବଧ—ଅଯୋଧ୍ୟା । (୪) ଗାନ୍ଧାର—କାନ୍ଦାହାର । ବର୍ଣ୍ଣିତ କାଳରେ ଏ ଅଞ୍ଚଳ ଆର୍ଯ୍ୟଭୂମିର ଅଂଶ ଥିଲା ।

Digitized by PPRACHIN, SOA

ନିବନ୍ଦ କୁରୁବର୍ଯ୍ୟ ! ଆର୍ଯ୍ୟସୁତ ଯେତେ (୧)
ଆଖ୍ୟାରେ ପୃଥକ, ମାତ୍ର ରକ୍ତେ ସର୍ବେ ଏକା
ଈର୍ଷ୍ୟାର କୁହକେ, ଆହା, ପାସୋର ଏ କଥା
ଆର୍ଯ୍ୟ ରକ୍ତସ୍ରୋତେ ଆର୍ଯ୍ୟେ ପ୍ଲାବବେ ଅବନୀ
କଲର ଆତ୍ମହା-ନୀତ ନୀତିନକ ହୋଇ, (୨)
ଫଣୀମାର ଶିରୋମଣି କାଢ଼ି ନେବାପାଇଁ
ନ ଲୋଡ଼େ କେ ? ମାତ୍ର ତାର ବିଷଦନ୍ତ ବେଙ୍କ
କୃତାନ୍ତର ଦୂତ ମଣି କଣ୍ଠ ପଶିବାକୁ
ଭରସିପାରେ କ କେହି ? ରାଜନ୍ୟବ୍ରାହ୍ମଣେ (୩)
ଭୂତଳେ ଅତୁଳ ରୂପରତନକୁନ୍ତଳା—
ଭାରତ ଭୁଜଙ୍ଗୀର ଏ ଥିଲେ ଯିନା ବେଣ୍ଟ
ବିଷଦନ୍ତ, ସବ ଅଗ୍ରେ ଭାଙ୍ଗିବ ତା କଳ
ନିର୍ବିଷ ଭାରତେ ଦେଖି, ଆସିବେ ଦଉଡ଼ି
ଦୂରୁ ବୈଦେଶିକଦଳ ଶିରୋମଣି ଲୋଭେ
ପଲେ ପଲେ, ଶସ୍ୟକ୍ଷେତ୍ରେ ପତଙ୍ଗ ଯେପରି
ବିରାଜେ ଯାବତ ବୀର ! ମୋ ତେଜ ଅଙ୍ଗେ
ପାରେ କି ପରଶି କେହି ? ହେଲେ ତ ନିର୍ବାଣ
ଅବଜ୍ଞାରେ ଲୋକେ ତାହା ଦଳନ୍ତି ଚରଣେ ,
ଦ୍ୱିଜାଧର ତେଜଃପୁଞ୍ଜ ଲଭିଲେ ସେରୂପେ
ଏ ଆର୍ଯ୍ୟସମାଜ ତଥା ଦଳ ବୈଦେଶିକେ
ଅକ୍ଷମ ପତିର ରୂପବତୀ ନାରୀ ପରି,
ନିଯୋଜିବେ ନିଜ ଭୋଗେ ଭାରତ ଅବନୀ,

(୧) କୁରୁବର୍ଯ୍ୟ—କୁରୁଶ୍ରେଷ୍ଠ, ସମ୍ବୋଧନ ପଦ । (୨) ଆତ୍ମହାନୀତ—ଯେଉଁ ନୀତରେ ନିଜର ସର୍ବନାଶ ହୁଏ । (୩) ରାଜନ୍ୟ—କ୍ଷତ୍ରିୟ ।

Digitized by PPRACHIN, SOA

ଶଙ୍କରେ ସିଂହାର ଯାହା ଶଙ୍କ ଗଳେ ଶୂଳ (୧)
ପାର୍ଥ ! ସେ ସିଂହାର ହୁଏ ଅନର୍ଥର ହେତୁ (୨)
ଅନର୍ଥର ହେତୁ ତେଣୁ ହେବ କଳିଯୁଗେ
ଭାରତଭୂମିର ଏହି ଅନୁପମ ଶୋଭା ।”
ବୋଇଲେ ପାଣ୍ଡବମଣି ଅଂଯ୍ୟଶିରୋମଣି
ଲଭି ଆର୍ଯ୍ୟ ଦୁଃଖେ ଦୁଃଖୀ, ଦେଖି ଦେବ ଭାରତେ
ବିଶାଳ ଭାରତେ ଆହା ଜଣେ ହୋଇ କେହି
ଜନ୍ମିବ ନାହିଁ କି କେବେ ଉଦ୍ଧରିବା ପାଇଁ
ଆର୍ଯ୍ୟଙ୍କର ପୁରାତନ ଲୁପ୍ତ ଗଉରବ ?
ବ୍ରାହ୍ମଣର ଏ ଦୁଷ୍ଟ ପ୍ରଥା-ପ୍ରତିଷ୍ଠାବତେ
କେହିକି ନୋହିବେ ବ୍ରତୀ ? କେହିକି ନୋହିବେ
ଶକ୍ତ ଭାଙ୍ଗିବାକୁ ସେହି ସ୍ୱାର୍ଥର ଶିକୁଳି,
ଶାସ୍ତ୍ରାଖ୍ୟ ସେ ଅଶାସ୍ତ୍ରର ଅବୈଧ ବନ୍ଧକ ?
ସାମ୍ୟ ଐକ୍ୟ ବୀଜ ମନ୍ତ୍ରେ ଜୀବନ୍ୟାସ ଦେଇ
ମୃତ ଆର୍ଯ୍ୟ ସନ୍ତତିଙ୍କୁ ପୁନରୁଜ୍ଜୀବିତ
କରିବାକୁ କେହି କି ହେ ନୋହିବେ ପ୍ରୟାସୀ ?
ବୀରପୁତ୍ରପ୍ରସୂ ଆହା ଏ ମହୀ କି ଆଉ
ପ୍ରସବିବେ ନାହିଁ କେବେ କୁମର ସେଭଳି ?
ତହୁଁ ଦେବ ହବ୍ୟବାହ ଏ ଭାରତଖଣି (୩)
ପ୍ରସବିବ କଳିଯୁଗେ ଅଙ୍ଗାର କେବଳ
ବହୁଶତବର୍ଷ ଗତ ହେଲେ ଏହିରୂପେ
ଯଥାକାଳେ ବାହାରିବ ସେ ଖଣି-ଗରଭୁ

---

(୧) ସିଂହାର– ଅଳଙ୍କାର, ଭୂଷଣ । (୨) ପାର୍ଥ—ପୃଥାପୁତ୍ର ଯୁଧିଷ୍ଠିର; ସମ୍ବୋଧନ ପଦ । (୩) ତହୁଁ ଦେବ ହବ୍ୟବାହ--କହିଲେ ଏହି କ୍ରିୟାପଦ ଏଠାରେ ଉହ୍ୟ ଅଛି ।

Digitized by PPRACHIN, SOA

ମହାମଣି ଯାର ଦିବ୍ୟଜ୍ୟୋତିର ଝଟକେ
ମ୍ଳାନପ୍ରଭ ହୋଇଯିବ ନଭେ କାବ୍ୟତାର
ଗୋଧୂଳିର ମଥାମଣି; ଅଥବା କୌସ୍ତୁଭ
ବିଶ୍ୱଲୀଳାଦରପଣ ବିଶ୍ୱମ୍ଭର-ହୃଦେ
ଅଭ୍ରଭେଦି-ହିମଗିରି-ପାଦେ ଶୁଭକ୍ଷଣେ (୧)
ଜନମିବେ ଶାକ୍ୟସିଂହ ଧର୍ମବୀରାଗ୍ରଣୀ
ଦେବଅଂଶେ ରାଜବଂଶେ ରଜୋଽତିକ୍ରମନାଃ (୨)
କାମଜୟୀ କାମଜୟୀ ଯଥା ଉମାପତି
ମୃତ୍ତିକାବିକାର ହୈମ-ସିଂହାସନ ତେଜି । (୩)
ସଂସାର ମମତା-ପାଶ ଛେଦି ଜ୍ଞାନବଳେ
ମହାଜ୍ଞାନୀ ଭାରତର ଅଜ୍ଞାନ-ଅନ୍ଧାରେ
ଜାଳିବେ ବିଜ୍ଞାନ-ଦୀପ, ଯାର ଜ୍ୟୋତିଃପ୍ରଭା
ବିଶ୍ୱ ତମଃସ୍ତୋମ-ମହାଦାବାନଳରୂପେ (୪)
ଆଲୋକିବ ଲୋକମନ ଦେଶଦେଶାନ୍ତରେ
କି ଉଦୀଚୀ ହୈମବତୀ ସପ୍ତର୍ଷିଶବଳା, (୫)
ପ୍ରାଚୀ ଦିବ୍ୟ ସ୍ମିତ-ଦ୍ୟୁତ-ଉଷା-ସହଚରୀ,
କିଅବା ଅବାଚୀ ସ୍ନିଗ୍ଧ ମଳୟ-ସୌରଭା, (୬)
ପ୍ରତୀଚୀ କୁଙ୍କୁମାରୁଣା ବରୁଣଲାଞ୍ଛନା, (୭)

---

(୧) ହିମାଳୟ ପାଦଦେଶବର୍ତ୍ତୀ କପିଳବାସ୍ତୁ ନଗରରେ ବୁଦ୍ଧଦେବ ଜନ୍ମଗ୍ରହଣ କରିଥିଲେ । (୨) ରଜୋଽତିକ୍ରମନାଃ—ରଜୋଗୁଣରୁ ମୁକ୍ତ । (୩) ବୁଦ୍ଧଦେବ ରାଜ ସିଂହାସନ ପରିତ୍ୟାଗ କରି ଧର୍ମାଲୋଚନା ଏବଂ ଧର୍ମପ୍ରଚାର ନିମନ୍ତେ ସନ୍ନ୍ୟାସଧର୍ମ ଗ୍ରହଣ କରିଥିଲେ । (୪) ଜଗତର ଅଜ୍ଞାନ ରୂପ ମହାରଣ୍ୟର ଦାବାନଳ ସ୍ୱରୂପ । (୫) ଉଦୀଚୀ—ଉତ୍ତର ଦିଗ । ଶବଳ-ଚିତ୍ରବିଚିତ୍ର । (୬) ଅବାଚୀ—ଦକ୍ଷିଣ ଦିଗ । (୭) ପ୍ରତୀଚୀ—ପଶ୍ଚିମଦିଗ । ସୂର୍ଯ୍ୟାସ୍ତ ରାଗରଞ୍ଜିତ ହେବାରୁ କୁଙ୍କୁମାରୁଣା ବରୁଣ ଦ୍ୱାରା ଅଧିଷ୍ଠିତ ହେବାରୁ ବରୁଣଲାଞ୍ଛନା ।

Digitized by PPRACHIN, SOA

ସମୃଦ୍ଧରେ ଏହି ଜ୍ୟୋତିଃ ବ୍ୟାପି କ୍ରମେ କ୍ରମେ
ବିରାଜିବ ଧରଣୀର-ଅବତଂସରୂପେ, (୧)
କି ଶୈଳ କି ପାରାବାର, ନ ପାରିବେ କେହି
ରୋଧିବାକୁ ଏ ଜ୍ୟୋତିର ଦୁର୍ନିବାର ଗତି,
ଅଗସ୍ତ୍ୟର ଶୁଭ୍ରୟା ହୃଦେ ଧରି ଭଦ୍ରପଦେ (୨)
ନିର୍ମଳେ ବହଇ ବାରି ଭବତଳେ ଯଥା,
ସେହିରୂପେ ଏ ଜ୍ୟୋତିର ପବନ ପରଶେ
ଭାରତ କଳୁଷରାଶି ଯିବ ଅପସରି,
ସାମ୍ୟ-ମୈତ୍ରୀ ମହାମନ୍ତ୍ରେ ହୋଇଣ, ଦୀକ୍ଷିତ,
ଭେଦମତ ପରିହରି ସହୃତ-ବନ୍ଧନେ (୩)
ବନ୍ଧହେବେ ଆର୍ଯ୍ୟଭୂମେ ଆର୍ଯ୍ୟସୁତ ଯେତେ,
ଶାକ୍ୟସିଂହଶିଷ୍ୟାଗ୍ରଣି ନୃପଶିରୋମଣି
ଜନ୍ମିବେ ଅଶୋକ-ନାମେ ନୃପ ମହାତେଜାଃ
ପୁଷ୍ପପୁରେ, ପୁତନୀରସୁରଧୁନୀ ତୀରେ, (୪)
ଅନନ୍ତ-ରତନ-ପ୍ରସୂ ହିମାଚଳଠାରୁ
ମୁକ୍ତାପ୍ରସୂତାମ୍ରପର୍ଣ୍ଣୀଯାଏ ଦେଶେ ଦେଶେ (୫)
ଉଡ଼ିବ ତାଙ୍କର ଜୈନ-କେତନ ଖରତେ, (୬)

---

(୧) ଧନ୍ୟବଧୂମାନଙ୍କର କର୍ଣ୍ଣପୂର-ସ୍ୱରୂପ । (୨) ଶରତ୍‌କାଳରେ ଦକ୍ଷିଣା-କାଶରେ ଅଗସ୍ତ୍ୟ ତାରାର ଉଦୟ ହୁଏ । ଅଗସ୍ତ୍ୟଙ୍କ ଉଦୟରେ କଳୁଷିତ ଜଳ ନିର୍ମଳ ହେବାର କିମ୍ବଦନ୍ତୀ ଅଛି । (୩) ସହୃତବନ୍ଧନେ—ଏକତା ବନ୍ଧନରେ । (୪) ପୁଷ୍ପପୁର (ଆଧୁନିକ ପାଟଣା) ଅଶୋକ ନୃପତିଙ୍କର ରାଜଧାନୀ ଥିଲା । ପୁଷ୍ପପୁରର ଅନ୍ୟନାମ ପାଟଳିପୁତ୍ର । (୫) ତାମ୍ରପର୍ଣ୍ଣୀ—ସେତୁବନ୍ଧ ରାମେଶ୍ୱରର ଅନତିଦୂରବର୍ତ୍ତିନୀ ସ୍ୱନାମ ପ୍ରସିଦ୍ଧ ନଦୀ । ଏହି ନଦୀର ସମୁଦ୍ର ସଙ୍ଗମସ୍ଥଳରୁ ମୁକ୍ତାଶୁକ୍ତି ଉତ୍ତୋଳିତ ହେଉଥିଲା । (୬) ଜୈନକେତନ—ଜୟଶୀଳ ପତାକା । ଅଶୋକ ସମସ୍ତ ଭାରତବର୍ଷର ସମ୍ରାଟ ଥିଲେ ।

Digitized by PPRACHIN, SOA

ସ୍ଥାନେ ସ୍ଥାନେ ଶୈଳ-ଖଳେ ଅକ୍ଷୟ ଅକ୍ଷରେ
ଶୋଭିବ ଏ ନବଦୀକ୍ଷା କଳୁଷନାଶିନୀ
ଅଶୋକର ଅନଶ୍ୱର ଯଶୋଲିପିରୂପେ, (୧)
ବରବାଜି ପ୍ରତିଷ୍ଠିତ ପାରସ୍ୟମଣ୍ଡଳେ, (୨)
ଶ୍ୱେତଗଜ-ନିଷେବିତ ନୀଳ ଇରାବତୀ—(୩)
ଧୌତବ୍ରହ୍ମେ, ବର୍ଣ୍ଣୋଜ୍ଜ୍ୱଳଚେଳପ୍ରସୂ ଚୀନେ (୪)
କିଂପୁରୁଷବର୍ଷେ (ଯହିଁ ମାନସ-ଦର୍ପଣେ
ହରଶୈଳ ହେରେ ନିଜ ଭୀଷଣ ମୂରତି,) (୫)
ହରିବର୍ଷେ ଯହିଁ ହିମବର୍ଷିଣୀ ଉଦୀଚ
ମଣ୍ଡେ ନିଜ ଭାଲତଟେ ଜ୍ୟୋତିଷ୍କ ପୁଣ୍ଡ୍ରକେ (୬)
ନୀଳରତ୍ନାକର ବକ୍ଷେ ପଦକରୂପିଣୀ
ସାଗରସମ୍ଭବା-ଲଙ୍କା-ଶ୍ୟାମଳଉରସେ (୭)
ପ୍ରାଚୀ ଦ୍ୱୀପପୁଞ୍ଜେ ଯହିଁ ସୌରଭ ଗୌରବ (୮)

---

(୧) ଭାରତବର୍ଷର ନାନାପ୍ରଦେଶରେ ପର୍ବତ ଦେହରେ ଅଶୋକଙ୍କର ଶାସନ ଅଦ୍ୟାପି ଦେଦୀପ୍ୟମାନ । ଓଡ଼ିଶାରେ ଯୁଗଡ଼ା ଧଉଳି ପର୍ବତରେ ଅଶୋକଙ୍କର ଶାସନ ଅଙ୍କିତ ହୋଇଛି । (୨) ପ୍ରାଚୀନକାଳରେ ପାରସ୍ୟ ଦେଶ ଉତ୍କୃଷ୍ଟ ଘୋଟକ ସକାଶେ ପ୍ରସିଦ୍ଧ ଥିଲା । (୩) ଇରାବତୀ ବ୍ରହ୍ମଦେଶର ପ୍ରଧାନ ନଦୀ । ଇରାବତୀ ଉପତ୍ୟକାରେ ଶ୍ୱେତହସ୍ତୀ ଦେଖାଯାନ୍ତି । (୪) ପ୍ରାଚୀନ କାଳରେ ଚୀନର କୌଷେୟ ବସ୍ତ୍ର [ଚୀନାଂଶୁକ] ଭାରତବର୍ଷରେ ଆଦୃତ ହେଉଥିଲା । (୫) କିଂପୁରୁଷବର୍ଷ—ତିବ୍ବତ, ହରଶୈଳ —ମାନସରୋବର ସନ୍ନିହିତ କୈଳାସଗିରି । (୬) ହରିବର୍ଷ—ସାଇବେରିଆ ଦେଶ । ଏହି ଦେଶର ଉତ୍ତରାକାଶ ବିବିଧବର୍ଣ୍ଣ ଜ୍ୟୋତିଷ୍କଲିକରେ ଶୋଭିତ । ବୌଦ୍ଧ ପରିବ୍ରାଜକମାନେ ସାଇବେରିଆଯାଏ ନିଜଧର୍ମ ପ୍ରଚାର କରିଥିଲେ । (୭) ସିଂହଳ ଦ୍ୱୀପ ଅତି ଉର୍ବର । ବନ ଏବଂ ଉପବନ ସର୍ବଦା ହରିତାଭମାନ । (୮) ପ୍ରାଚୀଦ୍ୱୀପପୁଞ୍ଜ – ଯାଭା, ସୁମାତ୍ରା ପ୍ରଭୃତି ଦ୍ୱୀପ ।

Digitized by PPRACHIN, SOA

ମଞ୍ଜୁଳ ପ୍ରଫୁଲ୍ଲ ଏଳା-ଲବଙ୍ଗ-କୁଞ୍ଜରୁ
ପାରାବାର-ବକ୍ଷେ ବହେ ସ୍ନିଗ୍ଧ ଗନ୍ଧବହ,
ନାବିକହୃଦୟେ ସ୍ପୃହା ଉତ୍ତେଜି ଉଦ୍ଦେଶକ;
ଶୋଭିତ ସଦାବିଶ୍ରୁତ-ଦୀପସ୍ତମ୍ଭ ପ୍ରାୟେ (୧)
ଭାରତୁଁ ବିକୀର୍ଣ୍ଣ ହୋଇ ଏହି ଧର୍ମଜ୍ୟୋତ;
ମାତ୍ର ଲଭିଥିବ ଏହା ଅଚିରେ ଭାରତେ
ଜୀର୍ଣ୍ଣ ଦେଉଳରେ ତାମସଗରଭେ
ସନ୍ଧ୍ୟାର ସକାଶେ ଯେବେ ଜାଳଇ ସ୍ୱପଥ
ଦହୁଡ଼ି, ତା ଶିଖା ଯେହ୍ନେ ଦଅନ୍ତି ଲିଭାଇ
ତେଣା ବାନ୍ଧି ଚରନ୍ତମଃସଚୃଷ୍ଟି ଚମଣି,
ପଲ ପଲ ବାହାରି ସେ ଦେଉଳ ରନ୍ଧ୍ରରୁ; (୨)
ସେହିରୂପେ ଏହି ଜ୍ଞାନ-ପ୍ରଦୀପର ଶିଖା—
ଲିଭାଇଦେବେଟି ବେଗେ ସ୍ୱାର୍ଥାନ୍ଧଦ୍ୱିଜାତ (୩)
ଅଜ୍ଞାନ-ତମିସ୍ରଚ୍ଛନ୍ନ ଭାରତମଣ୍ଡଳେ,
ଆଦିତ୍ୟପ୍ରତିମତେଜାଃ ଅବ୍ୟତିବଳଶ୍ରୀ
ବୀରେନ୍ଦ୍ର ବନମାଦିତ୍ୟ ଉଜ୍ଜୟିନୀପତି (୪)
ଦ୍ୱିଜାତିର ପକ୍ଷ ହୋଇ, ପ୍ରଚଣ୍ଡ ବିକ୍ରମେ

---

(୧) ଧର୍ମଜ୍ୟୋତି ବ୍ୟାଣ୍ଡିଦ୍ୱର ଦୀପ ସ୍ତମ୍ଭପରି । ଦୀପସ୍ତମ୍ଭ ଯୋଗୁ ନାବିକମାନେ ନିରାପଦରେ ସମୁଦ୍ର ପଥରେ ବିଚରଣ କରନ୍ତି । ଜୀବନ ପକ୍ଷରେ ଧର୍ମ ସେହିପରି । (୨) ପ୍ରାଚୀନ ଏବଂ ଜୀର୍ଣ୍ଣ ଦେଉଳ ସନ୍ଧ୍ୟାର ସମୟରେ ଅସଂଖ୍ୟ ଚମଣି ଦେଉଳରନ୍ଧ୍ରରୁ ବାହାରି ଯାତ୍ରୀମାନଙ୍କର ପ୍ରଦୀପ ଲିଭାଇ ଦଅନ୍ତି, ଯେହେତୁ ଆଲୋକ ସେମାନଙ୍କର ଅସହ୍ୟ । ପୁରୀର ବଡ ଦେଉଳରେ ଏହା ଘଟିଥିଲା । (୩) ସ୍ୱାର୍ଥାନ୍ଧ ବ୍ରାହ୍ମଣମାନେ ବୌଦ୍ଧଧର୍ମରୂପ ପ୍ରଦୀପ ଲିଭାଇ-ଦେବେ । (୪) ସୁପ୍ରସିଦ୍ଧନାମା ବିକ୍ରମାଦିତ୍ୟ ବୌଦ୍ଧମାନଙ୍କର ଉଚ୍ଛେଦ ସାଧନରେ ବ୍ରତୀ ହୋଇଥିବାର ଜନଶ୍ରୁତି ଅଛି ।

Digitized by PPRACHIN, SOA

ଆକ୍ରମିଲେ ଶାକ୍ୟସିଂହଶିଷ୍ୟ ରାଜଦଳେ,
ପ୍ରବଳ ମାରୁତେ ଆହା ତୁଳରାଶି ଯଥା,
ପ୍ରତାପେ ତାଙ୍କର ଯେବେ ଛିନ୍ନଭିନ୍ନ ହୋଇ
ତେଜିବେ ଏ ଭୂମି, କିମ୍ବା ନବଧର୍ମେ ମତି,
ନିଜ ଦଣ୍ଡ ପ୍ରତିଷ୍ଠିତ କରିବ ଉଲ୍ଲାସେ
ପୁଣି ଦଣ୍ଡଧର କଳି, ଏ ସୁଯୋଗ ପାଇ;
ଥିଲା ଯେ ତମିରେ ପୁଣି ବୁଡ଼ିବ ଭାରତ
ସେ ତମିରେ, ସତ୍ୟଧର୍ମ ହୋଇ ଅସ୍ତମିତ,
ଦ୍ୱୀପରୂପେ ଥିବ ମାତ୍ର ଏ ପାପପ୍ଲାବନେ
କେବଳ ଗୋଟିଏ ସ୍ଥଳୀ ସମଗ୍ର ଭାରତେ,
ଧନ୍ୟରେ ଉତ୍କଳ ତୁହି, ଏ ଘୋର ଅନ୍ଧାରେ
ତୁହି ସେ ରଖିବୁ ସିନା ପୋଷି ସ୍ନେହଦାନେ
ଗୁପତେ ଏ ଧର୍ମ-ଦୀପ ନୀଳାଦ୍ରି-କନ୍ଦରେ (୧)
ପୁଣ୍ୟଧାମ ! ଅସ୍ତଗଲେ କମଳିନୀ-ସଖା,
ରଖଇ ମୋ ଶିଖା ଯଥା ଆଦରେ ସଯତ୍ନେ
ସଞ୍ଚିତ ସାବିତ୍ର ଜ୍ୟୋତିଃ ତମିସ୍ରାତମସେ; (୨)
ଅଜ୍ଞାନ-ଅନ୍ଧାରେ ଆହା, ହେବେ ଅନ୍ଧୀଭୂତ
ପୁଣି ଅଳପଦନେ ଆର୍ଯ୍ୟେ, ସ୍ୱାର୍ଥାନ୍ଧ ରାଜନ୍ୟେ
ଭିଡ଼ିବେ ସୁଦୃଢ଼େ ପୁଣି ସ୍ୱାର୍ଥର ଶାଙ୍କୋଳି
ଭାରତର ଗଳଦେଶେ, ବଜ୍ରଗ୍ରନ୍ଥି ଦେଇ,

---

(୧) କେବଳ ଓଡ଼ିଶାରେ ବିଶେଷତଃ ଶ୍ରୀକ୍ଷେତ୍ରରେ ବୌଦ୍ଧଧର୍ମ ବହୁକାଳସ୍ଥାୟୀ ହୋଇ ପରେ ରୂପାନ୍ତରିତ ହୋଇଯାଇଥିବାର କଥା ପ୍ରାନ୍ତିକମାନଙ୍କର ଗବେଷଣାଦ୍ୱାରା ସ୍ୱୀକୃତ ହୋଇଅଛି । (୨) ବହ୍ନିକାଳରେ ସୂର୍ଯ୍ୟତେଜ ଅଗ୍ନିଠାରେ ନିହିତ ହେବାର ପ୍ରସିଦ୍ଧି ଅଛି । ସାବିତ୍ର—ସୂର୍ଯ୍ୟ ସମ୍ବନ୍ଧୀୟ । ତମିସ୍ରାତମସେ—ନୈଶ ଅନ୍ଧକାରେ ।

Digitized by PPRACHIN, SOA

ଔଷଧେ ଶମିତ ବ୍ୟାଧି ଛିଦ୍ର ପାଇ ଯଥା
ଆକ୍ରମଇ ବେଗିଦେହ ଦ୍ୱିଗୁଣ ବିକ୍ରମେ,
ଲଭିବ ଭାରତ ପୁଣି ଦାରୁଣ ଦୁର୍ଗତି,
ପାସୋରି ପୁରୁଷକାର-ମହିମା ପୁରୁଷେ
ମୃତଜଡ଼ପିଣ୍ଡବତ ହେବେ ଅଳ୍ପଦନେ
ନିରୁତ୍ସାହ,ନିରୁଦ୍ୟମ, ଦୈବପରାୟଣ,
ପୁଣି ଛିନ୍ନ ଭିନ୍ନ ହୋଇ ପରସ୍ପରେ ଦ୍ୱେଷୀ
ହେବେ ଆର୍ଯ୍ୟାବର୍ତ୍ତବାସୀ, ଆର୍ଯ୍ୟଧ୍ୱଂସଲାଗି
ଯବନକୁ ଆହ୍ୱାନିବେ ହେନ୍ତ୍ର ଆର୍ଯ୍ୟେ ପୁଣି
କୁଲ୍ୟା ଖୋଳି ନଦକୁଳେ ଆହ୍ୱାନିଲା ପରି,
କୁଠାରେ ଲଗନ ହୋଇ ବେଣ୍ଟରୂପେ ଯଥା
ନାଶେ-ତରୁ ବନଦେଶେ ଅନ୍ୟ ତରୁ-ଦଳେ,
ଯବନ ସଙ୍ଗତେ ମିଶି ଆର୍ଯ୍ୟ କୁଳାଙ୍ଗାରେ (୧)
ନାଶିବେ ଆର୍ଯ୍ୟଙ୍କୁ ଆହା, ଏହି ଆର୍ଯ୍ୟଭୂମେ,
ନଭେ ଏହି ତାରପୁଞ୍ଜ ପ୍ରାୟେ ଠାବେ ଠାବେ
ବୁଣି ହୋଇଯିବେ ଦେଶେ ଅସଂଖ୍ୟ ଯବନେ,
ଆତ୍ମହା ନିଠୁର ଦାସ, ପରକୁ ଦେଖାଇ
ଆତ୍ମଚ୍ଛିଦ୍ର; ସେ ପାପର ପ୍ରାୟଶ୍ଚିତ୍ତରୂପେ
ସ୍ୱଶୋଣିତେ ଆର୍ଯ୍ୟେ ଧରା କରିବେ ଉର୍ବରା
ହିମାଦ୍ରି ରୁ କୁମାରୀର ତାଳୀବନଯାଏ (୨)
ହିମାଦ୍ରି ନିଷ୍ୟନ୍ଦ-ନୀରେ ପୁଷ୍ଟ ଯାର ବପୁ,
ପଞ୍ଚ ମହା ସ୍ରୋତସ୍ୱତୀ ବାରି-କର ଦେଇ

---

(୧) କାନ୍ୟକୁବ୍ଜପତି ଜୟଚନ୍ଦ୍ର ଏହି କୁଳାଙ୍ଗାରମାନଙ୍କର ଅଗ୍ରଣୀ ହୋଇଥିଲେ । (୨) ହିମାଳୟଠାରୁ କୁମାରିକାର ହିନ୍ତାଳ ବନ ପର୍ଯ୍ୟନ୍ତ ଅର୍ଥାତ୍ ସମଗ୍ର ଭାରତବର୍ଷରେ ।

Digitized by PPRACHIN, SOA

ପ୍ରଜାରୂପେ କରନ୍ତ୍ର ଖଣ୍ଡନ୍ତ ଯା ପାଦେ,
ସ୍ୱର୍ଗତୁଲ୍ୟ ଭାରତର କସର୍ଗ ପରଖା
ଲଙ୍ଘି ନରପତି ସିନ୍ଧୁ ପଶିବେ ଏ ଦେଶେ
ଶୃଙ୍ଖଳ ଯବନକୁଳ, ଗୋଗୋଷ୍ଠେ ଯେସନେ
ପଶନ୍ତ ଶ୍ୱାପଦେ ଗୋଷ୍ଠବୃତି ଅତିକ୍ରମି,
ଶ୍ୱାପଦ ପର୍ଯ୍ୟାୟେ ସର୍ବେ ମାଂସାଶୀ କରତେ
ଶ୍ୱାପଦପର୍ଯ୍ୟାୟେ ତେଣୁ ନୃଶଂସ. କୋଧନ,
ଅକ୍ଷମାସର୍ବସ୍ୱ, ଗ୍ରାମ୍ୟସୁଖପକ୍ଷପାତୀ,
କୂଟଯୁଦ୍ଧେ ରତ, କୂଟ ରାଜତନ୍ତ୍ରେ ପଟୁ,
ଧର୍ମବ୍ୟପଦେଶେ ଆସି ଲୁଟିବେ ଭାରତ
ଏ ଜାତି, ଭାଙ୍ଗିବେ ହଠେ ଦେଉଳ-ବିଗ୍ରହ,
ଦୂଷିବେ ପବିତ୍ର ତୀର୍ଥ ଅମେଧ୍ୟ କ୍ଷେପି,
ଦହିବେ ଅଶେଷ ଶାସ୍ତ୍ର ଆର୍ଯ୍ୟଜ୍ଞାନନିଧି,
ଲୋଭେ କାମେ ମତ୍ତହୋଇ ହରିବେ ସବଳେ
ଭୂପତିର ଶିରୋଭୂଷା ମହାର୍ହ ମୁକୁଟ,
ସତୀର ମହାର୍ଘତର ସତୀତ୍ୱ-ଭୂଷଣ,
ପତିଙ୍କି ଅକ୍ଷମ ଦେଖି ସତୀତ୍ୱରକ୍ଷଣେ
ହାସେ ଲକ୍ଷ ଲକ୍ଷ ଆର୍ଯ୍ୟକୁଳ କମଳିନୀ
ଜ୍ୱଳନ୍ତ ଶିଖାରେ ଘୋର ଅର୍ପିବେ ସ୍ୱବପୁ
ପ୍ରାଣାଧିକ ମାନରକ୍ଷା ଲାଗି ମନସ୍ୱିନୀ,
'ସ୍ୱଧର୍ମେ ନିଧନ ଶ୍ରେୟଃ' ପାସୋରି ଏ କଥା
କେତେ ଆର୍ଯ୍ୟ ନରନାରୀ ନିର୍ଯ୍ୟାତନା-ଭୟେ
ଗ୍ରହିବେ ଯବନଦୀକ୍ଷା ଆର୍ଯ୍ୟ-ଧର୍ମ ତେଜି;

× × ×

ସ୍ୱାଧୀନତାରେ ଜଳାଞ୍ଜଳି ଦେଇ ଏହି ଜାତି
ପରମୁଖପ୍ରେକ୍ଷୀ ହୋଇ ରହିବେ କାଳତେ,

Digitized by PPRACHIN, SOA

ଦାସତ୍ୱ ଅଭ୍ୟାସ ଫଳେ ସ୍ୱଧାତାର ସ୍ୱାର୍ଥ
ମଣି ଉଦାସୀନ ସିନା ରହିବେ ସରବେ,
ହୀନଦେବା ଶ୍ଳାଘ୍ୟ ମଣି, ଧର୍ମେ ଆତ୍ମସ୍ନେହେ
ନିଶ୍ଚିନ୍ତ ରହିବେ ମୂଢ଼େ ଆତ୍ମସୁଖେ ରତ,
ମୃତ୍ୟୁକଳ୍ପ କୁଶାନ୍ତରେ ପ୍ରତାରିତ ହୋଇ
ନିଶ୍ଚିନ୍ତେ ରହିବ ଶୋଇ ଯେହ୍ନେ ଧେନୁପଲ
ଶୁଅନ୍ତ, ଶୋଣିତ ଦେହୁ ଅଲକ୍ଷିତେ ଯେବେ
ଶୋଷଇ ଚମଣି, ମଶା ତଡ଼ି ପକ୍ଷବାତେ,
ତରୁରେ କୁସୁମ ସାର, କୁସୁମେ ତା ମଧୁ
ସେ ମଧୁ ନ ଲଭେ ଯଥା ସେ ବୃକ୍ଷର କୀଟ,
ସେହିରୂପେ ଆର୍ଯ୍ୟେ ହେବେ ବଞ୍ଚିତ ସ୍ୱଦେଶେ,
ଦୂରୁଁ ଆସି ମଧୁଲିଟ ଲୁଣ୍ଠନ୍ତି ଆହ୍ଲାଦେ
ସେ ମଧୁ ଯେସନେ, ଏହି ଧର୍ମ-ସାରଭୂତ
ଭାରତର ସାର ଯାହା, ଆସିବେ ସେ ସବୁ
ଯବନର ଉପଭୋଗେ ଆର୍ଯ୍ୟ-କର୍ମଫଳେ
କାପୁରୁଷ ଆର୍ଯ୍ୟସୁତେ ଗ୍ରାମ୍ୟଶ୍ୱାନ ପରି
ଯୁଝୁଥିବେ ପରସ୍ପରେ ହର୍ଷ ଉପୁଜାଇ,
ଯବନରେ ଯବନର ଉଚ୍ଛିଷ୍ଟ-ଲାଳସେ
ଉଇ ଯ୍ରାମ୍ନେ ଭାରତକୁ ଉପରେ ଘୋଡ଼ାଇ
ନିମ୍ନେ ଅନ୍ତଃସାର ତାର ହରି ଅଲକ୍ଷିତେ
ବୋଲାଇବେ ସର୍ବଗ୍ରାସୀ ଏ ଯବନେ ପୁଣି
ଭାରତ ଖଣ୍ଡର ବିଧି-ପ୍ରେରିତ ପ୍ରହରି,
ଭାରତ ସୁରଭି-କ୍ଷୀରୁଁ ହେବେଟି ବଞ୍ଚିତ
ନିଜ ଦୋଷେ ଆର୍ଯ୍ୟବଂଶେ ବହୁ ଦୂରୁଁ ଆସି
ଶୋଷିବେ ଭାରତ ଦେହୁଁ ଶୋଣିତ ନିରତେ
ଯବନ ଜଳୌକା ଯନ୍ତ୍ର ଶୋଷଣ-କୌଶଳେ

Digitized by PPRACHIN, SOA

ହିମାଦ୍ରିର ଦେବଦାରୁ-ନିକୁଞ୍ଜ-ସଦନେ,
ମଲୟେ ଚନ୍ଦନଦ୍ରୁମ-ସ୍ନିଗ୍ଧ ଛାୟାତଳେ
ଭାରତର ଦେବ-ଦେବୀ ନରଜନେ ବସି
ବିସର୍ଜିବେ ଅଶ୍ରୁ ଦେଖି ଆର୍ଯ୍ୟର ଦୁର୍ଗତି ।
କିନ୍ତୁ କି ଘଟିବ ଯାହା, ବିସ୍ତାରି ଏ କଥା
କହିବାକୁ ନାହିଁ ଆଉ ଅବସର ଏବେ;
ଯାମମାନ ପାହିବାକୁ ଅଛି ବିଳମ୍ବ,
ଦେଖ ଆସିଲେଣି ଏବେ ଧ୍ରୁବ-ମେରୁ ବୁଲି
ମେରୁନଭେ ସପ୍ତର୍ଷିର ସୁବର୍ଣ୍ଣ ବେଙ୍ଗଲା, (୧)
ଦିବ୍ୟାଞ୍ଜନ ଯୋଗେ ତୁମ ଦୃଷ୍ଟିକି ପ୍ରସାରି
ଦେଶେକାଳେ ଭବିଷ୍ୟ ସଙ୍କ୍ଷେପେ ଦେଖାଇ (୨)
ଗ୍ରାମକୁ ମେଲାଣି ଦେଇ ଯିବ କୁରୁମଣି ।

—:୦:—

(୧) ଉତ୍ତରାକାଶରେ ସପ୍ତର୍ଷିଧ୍ରୁବଙ୍କୁ ପ୍ରଦକ୍ଷିଣ କରି ଅପର ପାର୍ଶ୍ୱକୁ ଆସିଲେଣି । ଧ୍ରୁବଙ୍କ ସହିତ ମେରୁର ଏବଂ ସପ୍ତର୍ଷିଙ୍କ ସହିତ ବେଙ୍ଗଲାର ଉପମା । ପ୍ରଥମ ମେରୁ ଶବ୍ଦର ଅର୍ଥ କେନ୍ଦ୍ରସ୍ତମ୍ଭ, ଦ୍ୱିତୀୟ ମେରୁ ଶବ୍ଦର ଅର୍ଥ ଉତ୍ତର ଦିଗ । ସପ୍ତର୍ଷିଙ୍କର ଧ୍ରୁବ-ପ୍ରଦକ୍ଷିଣ ରଜନୀର ଅବସାନସୂଚକ । (୨) ଦେଶେ, କାଳେ—ଦୂରଦେଶ ପ୍ରତି ଏବଂ ଭବିଷ୍ୟତ୍‌କାଳ ପ୍ରତି ।

Digitized by PPRACHIN, SOA

# ଷଷ୍ଠ ସର୍ଗ

ଦିବ୍ୟ ଅବଧାନେ ଅସୁ ଏ ଗୀତ ତୁମ୍ଭର
ହେ ଗୃଟେନ୍ଦ୍ର ମନ୍ଦ୍ରନାଦ-ପ୍ରାପତର ପତି, (୧)
ବାମଣ୍ଡାମଣ୍ଡଳେଶ୍ୱର ଉତ୍କଳମଣ୍ଡନ,
ତୁମ୍ଭ ଶୁଭ-ଆବର୍ତ୍ତେ ହୋଇଛୁ ଉତ୍କଳେ
ଦେବଦୁର୍ଗ, ଦେବ, ଏବେ ତୀର୍ଥ ସାରସ୍ୱତ (୨)
ବୁଧହଂସ କେଳିସରଃ ଅବଦ୍ୟା-ଉପରେ,
ରଜତ-କାଞ୍ଚନମୁକ୍ତାମଣିରେ ଗଠିତ
ଧନମତ୍ତ ଭୂପଙ୍କର ବେଣୁଧନରୂପୀ
ତୁଚ୍ଛ ଅଳଙ୍କାରେ, ତୁମ୍ଭ ପ୍ରୀତି ନବଳାଇ
ଅପ୍ରାକୃତ ଅଳଙ୍କାର ଖୋଜିଲ ଯତନେ, (୩)
ହେ ନୃପ-ସବିତା, ପଶି କବିତାଭଣ୍ଡାରେ,
ସେ ଭଣ୍ଡାରରୁ ବାଛି ବାଛି ସଜାଇ କୌଶଳେ
ଦେଖାଇଲ ନବଭୂଷା ଉତ୍କଳ-ଶିବୁଟେ,

---

(୧) ବାମଣ୍ଡା ରାଜ୍ୟର ଅଧୀଶ୍ୱର ମହାରାଜ ଶ୍ରୀଯୁକ୍ତ ସୁଚଳଦେବଙ୍କ ପ୍ରତି ସମ୍ବୋଧନ । ପ୍ରୋକ୍ତର ନାମ ପ୍ରଧାନପଟ ଏହା ବାମଣ୍ଡା ରାଜଧାନୀ ଦେବଗଡ଼ର ଅତି ନିକଟବର୍ତ୍ତୀ । ଏହାର ମନ୍ଦ୍ରନନାଦ ସର୍ବଦା ଦେବଗଡ଼ରେ ଶ୍ରୁତହୁଏ । ଏହି ପ୍ରପାତ ଓଡ଼ିଶାର ଗୋଟିଏ ପ୍ରଧାନ ଦୃଶ୍ୟ । ପ୍ରଧାନ ପାଟ ନାମକ ଖଣ୍ଡିଏ ଅଭିନବ କାବ୍ୟରେ ଏହି ପ୍ରପାତର ସୁବିସ୍ତୃତ ବର୍ଣ୍ଣନା ହୋଇଅଛି । (୨) ଦେବଗଡ଼ ଉତ୍କଳ ସାହିତ୍ୟର ଚର୍ଚ୍ଚାର ଅନ୍ୟତମ କେନ୍ଦ୍ର, ଉତ୍କଳରେ ସଂସ୍କୃତ ସାହିତ୍ୟ ଚର୍ଚ୍ଚାର ମଧ୍ୟ ସର୍ବପ୍ରଧାନ କେନ୍ଦ୍ର । (୩) ମହାରାଜା ସୁଚଳଦେବ ଓଡ଼ିଆ ଅଳଙ୍କାର ଗ୍ରନ୍ଥର ପ୍ରଥମ ପ୍ରଣେତା ।

Digitized by PPRACHIN, SOA

ତାନେ ଯାର ନାହିଁ କ୍ଷୟ, ନ ଲାଗଇ ଯହିଁ
କଳଙ୍କ ତସ୍କର ଯାହା ନପାରଇ ହରି,
ଯା ଝଟକ କେବେ ଲବେ ନ ପାରଇ ମ୍ଳାନ
କ୍ରୂର କାଳ, ନତ୍ୟରତ୍ନ କୀର୍ତ୍ତି-ନକ୍ଷତ୍ରନେ, (୧)
କେତେ ଯେ ବିଭବ ଅଛି ବାଗ୍‌ଦେବୀଭଣ୍ଡାରେ
ତା ସବୁ ଗ୍ରମୂରେ ଜଣା ତୁମ୍ଭର ଭର୍ତ୍ସନା
ମୂର୍ଖ-ଶ୍ଳାଘାଠାରୁ ଶ୍ଳାଘ୍ୟମଣେ ଶତଗୁଣେ (୨)
ଆମନ୍ତ୍ରିଲି କର ଯୋଡ଼ି ଯୋଗ୍ୟ ଶ୍ରୋତା ଜାଣି
ସେହୁଁ ଜାତ ଧୀପ ପ୍ରାପ୍ତେ ତୁମର ଆତ୍ମଜ
ଶ୍ରୀସଚ୍ଚିଦାନନ୍ଦ ଦେବ କୁମାର ପ୍ରତିମ, (୩)
କୁମାର ସହିତ ଅସି ବାଗ୍‌ଦେବୀମଣ୍ଡପେ
କର ଅଧିଷ୍ଠାନ, ଦେବ ଶୁଣିବ ଏ କଥା
ପାବନୀ, ପାବନୀ ଯଥା ତ୍ରିତାପହାରିଣୀ
କଳୁଷନାଶିନୀ ତୁମ୍ଭ କୁଳ-ଅଧିଦେବୀ (୪)
ଅଗ୍ନିଙ୍କ ବଚନ ଶୁଣି ଦୀର୍ଘଶ୍ୱାସ ତେଜି
ତୁଷ୍ଣୀମ୍ଭାବ ଭଜି ରାଜା ରହିଲେ କିଯାଦେ
କିଛିକ୍ଷଣ, ଚିତ୍ରାର୍ପିତ ପ୍ରତିମା ଯେସନ,
ହିଙ୍ଗୁଳାରଞ୍ଜିତାଧୌତ ଅଙ୍ଗାର-ପ୍ରାନ୍ତରେ

(୧) କୀର୍ତ୍ତି-ନକ୍ଷତ୍ରନଙ୍କାଙ୍କି କାଳ ପ୍ରଭାବରେ ପ୍ରାକୃତ ଅଳଙ୍କାର ପ୍ରଭା ମଳିନ ହୁଏ । ମାତ୍ର ହବିଦ୍ୱିଜ୍ୟର ଅପ୍ରାକୃତ ଅଳଙ୍କାରର ପ୍ରଭା ଚିର ଦେଦୀପ୍ୟମାନ । କାଳ ହେଁହର ପ୍ରଭା ମଳିନ କରି ନ ପାରେ । (୨) ମୂର୍ଖର ପ୍ରଶଂସା ଅପେକ୍ଷା ପଣ୍ଡିତର ଭର୍ତ୍ସନା ଶ୍ରେୟସ୍କର । (୩) ବାମଣ୍ଡାରାଜ୍ୟର ଯୁବରାଜ ଶ୍ରୀ ସଚ୍ଚିଦାନନ୍ଦ ଯୋଗ୍ୟ ପିତାର ଯୋଗ୍ୟ ପୁତ୍ର । କୁମାରପ୍ରତିମ କୁମାର—କାର୍ତ୍ତିକେୟ ପରି ପୁତ୍ର । ଗଙ୍ଗାଦେବୀ ବାମଣ୍ଡା ରାଜବଂଶର ଅଧିଷ୍ଠାତ୍ରୀ ଦେବତା ।

Digitized by PPRACHIN, SOA

ପର୍ବତ ହିଙ୍ଗୁଳାପୀଠେ ଜଳଭିତେ ଯଥା
ଆଚମ୍ବିତେ ବହ୍ନି ଶିଖା ନଦୀପ-ନଶୀଥେ (୧)
ଅଦୂରେ ଉଠିଲା ଜଳ ସହ୍ୟଗିରତଟେ
ବହ୍ନି ଶିଖା ସେହମତ ସେ ଶିଖା ମଧ୍ୟରୁ
ବାହାରଲେ ବନଭୂମି ପ୍ରଭାରେ ଉଭାସି
ହେମଆଜ୍ୟପାତ୍ର ହସ୍ତେ ସ୍ୱାହା ମହାଦେବୀ (୨)
ଜ୍ୟୋତିର୍ମୟୀ, ଆହା, ଯଥା ମହିଷମର୍ଦ୍ଦିନୀ
ବାଳେନ୍ଦୁ-ଶେଖର, ନୀଳପ୍ରଲମ୍ବକୁନ୍ତଳା,
ସ୍ୱଧର ରଜତଶୂଳ ଧର ବରଭୂଜେ
ବାହାରଲେ ବ୍ରହ୍ମକୁଣ୍ଡୁଁ ବିରଜା ସୁନ୍ଦରୀ
ଦେବଯଜ୍ଞେ ପୂତନଦୀ-ବୈତରଣୀ ତୀରେ, (୩)
ଆଜ୍ୟପାତ୍ର ନଇ ଦେବୀ ବୀତହୋତ୍ର କରେ (୪)
ବିଜୁଳିର ବେଗେ ଗଲେ ଉଭେଇ ପଲକେ,
ସେ ଅନଳୁ ଭସ୍ମ ନେଇ ସେ ଆଜ୍ୟେ ମିଶାଇ
ରଚି ଦିବ୍ୟାଞ୍ଜନ ତହୁଁ ଦେବ ହବ୍ୟବାହ
ଯୁଧିଷ୍ଠିର ପ୍ରତି ସ୍ନିହେ କହିଲେ ଏସନ
"ହେ ବୀର, ଯାବତ ମୋର ଅଧିଷ୍ଠାନ ଏଥି,
ଏ ଅଞ୍ଜନ-ଯୋଗେ ତୁମ୍ଭ ଇନ୍ଦ୍ରିୟ-ଜନକରେ

---

(୧) ହିଙ୍ଗୁଳାପୀଠ—ତାଳଚେର ରାଜ୍ୟର ଅନ୍ତର୍ଗତ। ସିଙ୍ଗଡ଼ା ନଦୀ ଏହିଠାରେ ପ୍ରବାହିତ। କମ୍ବଦନ୍ତୀ ଅଛି ଯେ ଏଠାରେ ଅକସ୍ମାତ୍ ଅନଳର ଆବିର୍ଭାବ ହୋଇ ହିଙ୍ଗୁଳା ଦେବୀଙ୍କର ଅଧିଷ୍ଠାନ ହୁଏ। ଏ ଅଞ୍ଚଳରେ ପଥର କୋଇଲା ଖଣି ଅଛି। (୨) ସ୍ୱାହା—ଅନଳ-ପତ୍ନୀ। (୩ ଯାଜପୁରରେ ବିରଜା ଦେବୀ ବର୍ଣ୍ଣିତ ବେଶରେ ଯଜ୍ଞାନଳରୁ ବାହାରିଥିବାର କଥା 'ବିରଜା-ମହାତ୍ମ୍ୟ'ରେ ଅନୁସନ୍ଧେୟ। (୪) ବୀତହୋତ୍ର—ଅଗ୍ନି। ଦୂରଦେଶସ୍ଥିତ କମ୍ବା ଭବିଷ୍ୟଦ୍‌ଗର୍ଭସ୍ଥ ବିଷୟକୁ ଯାହା ପ୍ରତ୍ୟକ୍ଷ କରିବଏ।

Digitized by PPRACHIN, SOA

ପ୍ରସରବ ଦିବ୍ୟଶକ୍ତି, ଦେଖିବ ବିସ୍ମୟେ
ଦୃଶ୍ୟାବଳୀ, ଏବେ ଯାହା ନରନେତ୍ରାତୀତ
ଭାରତର ଦୃଶ୍ୟପଟ ଫିଟାଇବ ଆଜି
ଦେଶକାଳବ୍ୟବଧାନ-ଉନ୍ମୋଳନପଟୁ
ଏ ଅଞ୍ଜନ ତୁମ୍ଭ ଆଗେ ତୁମ୍ଭ ଇଚ୍ଛାମତେ,
ଏହି ସେ ଅଞ୍ଜନ, ଯାହା ଦ୍ୱୈପାୟନ ଋଷି
ଦେଇଥିଲେ ସଞ୍ଜୟଙ୍କୁ, ଏ ଅଞ୍ଜନଯୋଗେ
ଦୂରୁ କୁରୁକ୍ଷେତ୍ର ରଣ ଦେଖି ସ୍ୱନୟନେ,
କହୁଥିଲେ ବାର୍ତ୍ତା ତୁମ୍ଭ ଜ୍ୟେଷ୍ଠତାତ ପଦେ
ହସ୍ତିନାପ୍ରାସାଦେ ବସି ଅଦୃଶ୍ୟଦରଶୀ, (୧)
କହ କି ଦେଖିବ ବୀର, ଦେଖାଇ ଏକ୍ଷଣି
ସେ ଦୃଶ୍ୟ, ଅନ୍ତର ହେବ ନ ପାହୁ ଶର୍ବରୀ ।
କହିଲେ କୌନ୍ତେୟ, "ଦେବ, ଦେଖାଅ କି ରୂପେ
ଯବନର କରଗତ ହେବ କଳିଯୁଗେ
ହସ୍ତିନା-ନଗରେଶ୍ୱରୀ, ବୀରପ୍ରସବିନୀ,
ଦେଖାଅ କିରୂପେ ଆର୍ଯ୍ୟ-ହର୍ଯ୍ୟକ୍ଷର ଗୁହା
ଯବନ-ଜମ୍ବୁକ-ବଳେ ହେବ ପରିଣତ ।"
ଉତ୍ତରିଲେ ବହ୍ନି, "ବୀର, ବହୁଦିନ ପରେ
ଜାହ୍ନବୀର ଗର୍ଭେ ହୋଇ ବିଲୀନ ହସ୍ତିନା
ଆର୍ଯ୍ୟରାଜଧାନୀ ହେବ ଇନ୍ଦ୍ରପ୍ରସ୍ଥପୁରେ
ସୁପ୍ରଥିତ ମର୍ତ୍ତ୍ୟେ ହୋଇ ଦିଲ୍ଲୀ ଅଭିଧାନେ ।"

---

(୧) କୌରବ ଦ୍ୱାରପାଳ ସଞ୍ଜୟ ବ୍ୟାସଦେବଙ୍କ ପ୍ରସାଦରୁ ଦିବ୍ୟଚକ୍ଷୁ ଲାଭକରି ଅନ୍ଧରାଜା ଧୃତରାଷ୍ଟ୍ରଙ୍କ ସମ୍ମୁଖରେ କୁରୁକ୍ଷେତ୍ରଯୁଦ୍ଧ ବର୍ଣ୍ଣନା କରୁଥିଲେ ।

Digitized by PPRACHIN, SOA

ଏହା ବୋଲି ବସାଇଣ ପୂର୍ବୋତ୍ତର ମୁଖେ (୧)
ରଜାଙ୍କୁ, ଉଚ୍ଚାରି ମନ୍ତ୍ର, ଦେବ ବିଶ୍ୱବସୁ
ଅଞ୍ଜନ ଲଗାଇ ଦେଲେ ତାଙ୍କର ନୟନେ,
ଦିବାହ୍ନ ଉତ୍ସବେ ଯଥା ବହ୍ନିକଣାଯୋଗେ,
ଦ୍ରଷ୍ଟୃବୃନ୍ଦେ ଚମକାଇ, ଭେଦ ନୈଶ ତମଃ
ଆଗ୍ନେୟ ବାଣର ରକ୍ତ ଷ୍ଟ୍ରେ ଆଚମ୍ବିତେ,
କିମ୍ବା ନୈଶସିନ୍ଧୁବାକ୍ଷ୍ମ ନାବିକର ଅକ୍ଷି
ଝିକରାଇ, ଉଠେ ଯଥା ଦିଗନ୍ତେ ଉଜ୍ଜ୍ୱଳ
ନୀଳ ଊର୍ମିମାଳା ଭେଦ ବାଡ଼ବାଗ୍ନି-ଜ୍ୱାଳା,
ଷ୍ଟୁରିଲ୍ ସହସା ଅଗ୍ରେ ଗଙ୍କଗୃଚ-ଗୁରୁ-
ତୋରଣା-ଶୋଭନା ଦିଲ୍ଲୀ ପତାକାମାଳିନୀ,
ମନୋମୋହକରୀ ସୁଖସ୍ୱପନ ଯେପରି,
ତରୁଣ-ଅରୁଣ-ରାଗେ ଦିଶି ଜକଜକ
କାଞ୍ଚନ-କଳସ ତୁଙ୍ଗ-ଦେବାଳୟ-ଚୂଡ଼େ
ଶାରଦସନ୍ଧ୍ୟାଭ୍ରପୁଞ୍ଜ ପ୍ରାୟେ ମହୋଜ୍ଜ୍ୱଳ;
ସୁନ୍ଦର ଗୋପୁରବୃନ୍ଦ ଜଡ଼ିତ ରତନେ, (୨)
ନାନା ବର୍ଣ୍ଣଶୋଭି ଶ୍ରେଣୀ ଶ୍ରେଣୀ ସ୍ତମ୍ଭାବଳୀ
ଅଳିନ୍ଦେ, ଦ୍ୱିରଦ-ରଦ-ଗବାକ୍ଷ-ଶୋଭିତ
ସ୍ଫଟିକ-ଜଗତୀ-ସୌଧେ ମନୋହର ଅତି, (୩)
ରତ୍ନାକାରେ ସମୁଜ୍ଜ୍ୱଳ; ବିପଣି-ବୀଥିକା
ଅଗସ୍ତ୍ୟଶୋଷଣେ ଶୁଷ୍କ ରତ୍ନାକରଛବି,
ଅବିରତ ମୋଦପ୍ରଦ ଶୀକରବରଷୀ

(୧) ସହ୍ୟାଦ୍ରିର ଉତ୍ତର ପୂର୍ବରେ ଦିଲ୍ଲୀ ନଗରୀ । (୨) ଗୋପୁର ବୃହଦାକାର ତୋରଣବିଶେଷ । ଦାକ୍ଷିଣାତ୍ୟର ମନ୍ଦିରମାନଙ୍କରେ ଅନେକ ଗୋପୁର ଦେଖାଯାଏ । (୩) ଜଗତୀ—ଚନ୍ଦ୍ରଶାଳା ।

Digitized by PPRACHIN, SOA

ପ୍ରଧାନପାଟର ପୂତପ୍ରପାତପ୍ରଥମ (୧)
ଉସ୍ରମାଳେ ବେଢ଼ା ଇନ୍ଦ୍ରନୀଳକ୍ରୀଡ଼ାଗିରି,
ନଭସ୍ପୃଶୀ କୀର୍ତ୍ତିସ୍ତମ୍ଭ, କୈଳାସ-ସଙ୍କାଶ
ପ୍ରାକାର, ସୁରମ୍ୟ ତରୁଲତା-ଗୃହାରାମେ,
ମଞ୍ଜୁଳ ପ୍ରବାଳେ, କଳ-ସୁମନ-ସମ୍ଭାରେ,
ଅଦୂରେ କାଳିନ୍ଦୀସ୍ରୋତେ ଧାଏଁ ଖରବେଗେ (୨)
ନୀଳାତଟୀ, ରଙ୍ଗେ ଦୋଳ ଧବଳପଟିକା (୩)
ହଂସାବଳୀ-କେଳିସ୍ଫୁଟ ତଟେ ଉପୁଜାଇ,
ତୋରଣ-ସମ୍ମୁଖେ ମହାବିସ୍ତୃତ ପ୍ରାନ୍ତରେ
ରୁଣ୍ଡ ହୋଇଛନ୍ତି ଆଜ ଚଉଦିଗୁଁ ଆସି
ନାନାଜାତି ସେନା ନାନା ବେଶଭୂଷାଧାରୀ,
ଗିରିଯୁଦ୍ଧେ ବିଶାରଦ ଗିରି-ଦୁର୍ଗ ତେଜି
ଆସୁଛନ୍ତି ଅଜାମିଳେ ଧୃଷ୍ଟିମନ୍ତ ତେଜେ (୪)
ଉର୍ଦ୍ଧ୍ୱେ ବିଶାଳ ଶୂଳ ଥୋଇ ସ୍କନ୍ଧଦେଶେ
ଧାଡ଼ି ଧାଡ଼ି ଧାନ୍ତି ଯେହ୍ନେ ଫଣାଧରଫଣୀ, (୫)
ଉଚ୍ଚାଙ୍କ କେତନବର ସମୀରେ ଉଡ଼ାଇ (୬)
ହସ୍ତେ ଚକ୍ର ଯେହ୍ନ ଆସେ ଗୁର୍ଜରବାସିନୀ
ବୀର୍ଯ୍ୟବତୀ ଊର୍ଜସ୍ୱଳା ଯଦୁ-ଅନୀକିନୀ,
ତୂର୍ଯ୍ୟ ଘୋଷେ, ବାସୁଦେବ ବାମଣ୍ଡାମଘବା,

---

(୧) ପ୍ରଧାନପାଟ ବମଣ୍ଡାର ସୁନାମପ୍ରସିଦ୍ଧ ପ୍ରପାତ । ସର୍ଗାରମ୍ଭରେ ଏହି ପ୍ରପାତର ଉଲ୍ଲେଖ ହୋଇଅଛି । (୨) କାଳିନ୍ଦୀ—ଯମୁନା । (୩) ନୀଳାତଟୀ—କ୍ରୀଡ଼ାନୌକା । ପଟିକା—ଅଞ୍ଚଳ । (୪) ଅଜାମିଳ—ଆଜମିର ନିବାସୀ । ଆଜମିର ଗିରିବେଷ୍ଟିତ ଅଟେ । ଏ ଅଞ୍ଚଳରେ ଅନେକ ଗିରିଦୁର୍ଗ ଅଛି । (୫) ଧୃଷ୍ଟିମନ୍ତ । (୬) ଗୁର୍ଜରର ଅନ୍ତର୍ଗତ ଦ୍ୱାରକା ଯାଦବମାନଙ୍କର ରାଜଧାନୀ ଥିଲା । ଯଦୁସେନାର ପତାକା ଚକ୍ରଲାଞ୍ଛିତ ।

Digitized by PPRACHIN, SOA

ହେ ଭୂପାଳମୌଳିମଣି, ମଣ୍ଡିତ ଏକାଳେ
ଉତ୍କଳେ ଯେ ମହାବଂଶ, ଦୁର୍ଦ୍ଧର୍ଷସଂଗ୍ରାମେ (୧)
ହେମସାଜସନେ ଶାଢ଼େ ବାନ୍ଧି ସିଂହକଟି
ଆସଇ ସୈନ୍ଧବୀ ଚମୂ ଶାଳ-ମୋଗ୍ଧ୍ୟାସ୍ମି (୨)
ଶିକ୍ଷିତ ସୈନ୍ଧବୀ-ଘୋଡ଼ା ଖୁରେ ସମୁଦ୍ଧତ
ଧୂଳିରେ ଅନ୍ଧାର ନଭଃ ଧରି ରଣୋନ୍ମାଦେ
ସମ୍ମତଙ୍କ ପ୍ରାସ୍ତେ କରେ ବଙ୍କ ବରଦାଳି (୩)
(ତୁମ୍ଭ ଯଶେ ସମୁଜ୍ଜ୍ୱଳ ଯେ ବଂଶ ଏ ଦେଶେ
ହେ ଯଶସ୍ୱି, ରାମଚନ୍ଦ୍ର ଭଞ୍ଜଭୂମିପତି ।)
ଆସନ୍ତି କୌଶେୟ ଭଟେ କ୍ଷିତୀପାଳଧାସ୍ମି (୪)
ମରୁଦେଶୁଁ ମରୁସ୍ଥଳ-ମୃଗେନ୍ଦ୍ର ବିକ୍ରମେ (୫)
ଅପମାନ ଅସହିଷ୍ଣୁ, କୋପନପ୍ରକୃତି
ବଂଶ୍ର ହୁତଭୁକ୍ ଯଥା, କରନ୍ତେ ପ୍ରସ୍ତୁତ
ନେବାକୁ ଦେବାକୁ ମଥା କଥାକେ କଥାକେ
ବୀର ଦର୍ପେ ମହାସ୍ୱାଙ୍କିତ କେତନ ଉଡ଼ାଇ

---

(୧) ବାମଣ୍ଡା ରାଜବଂଶ ଯଦୁବଂଶ ସମ୍ଭୂତ । ବାସୁଦେବ—ସମ୍ବୋଧନ ପଦ । ବାମଣ୍ଡାମଣ୍ଡବା—ବାମଣ୍ଡାର ଇନ୍ଦ୍ର ସ୍ୱରୂପ । 'ଦୁର୍ଦ୍ଧର୍ଷ' ଅନାକମୀର ବିଶେଷଣ । (୨) ସୈନ୍ଧବୀ ଚମୂ ସିନ୍ଧୁଦେଶୀୟ ସେନା ସିନ୍ଧୁଦେଶ ଘୋଟକ ଜନ୍ମକ୍ଷେତ୍ର ପ୍ରସିଦ୍ଧ ଥିଲା । (୩) ବରଦାଳି—ବଙ୍କାକାର ଅସ୍ତ୍ରବିଶେଷ । (୪) ମୟୂରଭଞ୍ଜ ରାଜବଂଶ କୌଶେୟ ଅର୍ଥାତ୍ ଶତ୍ରୁବଂଶୋଦ୍ଭୂତ ଥିଲେ । ଏମାନଙ୍କର ଆଦ୍ୟସ୍ଥାନ ରାଜପୁତାନା । ରାଜପୁତନାର ମରୁ ପ୍ରଦେଶରେ ପୂର୍ବକାଳରେ ଅନେକ ସିଂହ ଥିଲେ । (୫) ବିକ୍ରମେ—ପଦକ୍ଷେପରେ ।

Digitized by PPRACHIN, SOA

ଆସନ୍ତି ସମ୍ବରକୂଳୁଁ ବୈରାଟ ପଦାତ (୧)
ପ୍ରାଂଶୁତନୁ ଶ୍ୟାମଧନୁ ଝମକ ଭୈରବେ
ସବ୍ୟକରେ ଦବ୍ୟେତରେ ଖର୍ପର ପରଶୁ;
କରନ୍ତି ଯେ ସୁଟ୍ଟଳିତ ଲଙ୍ଗଳର ଫାଳେ
କାଳିନ୍ଦୀର ବେନିକୂଳ ଶସ୍ୟେ ଶ୍ୟାମଳିତ,
ଆସୁଛନ୍ତି ଉରସିଲ ସୌରସେନୀ ବୀରେ (୨)
ଶାଣିତ ପାଣିତ ଅସି କୌତୁକେ ଆସ୍ଫାଳି (୩)
ଚର୍ମଣ୍ୱତୀ-କଙ୍କପର ଖୋସି ଶିରସ୍ତ୍ରାଣେ (୪)
କର୍କଟ କର୍କଶ ଯେସନେ କର୍କଟ ସେ ସ୍ରୋତେ,
ବିଶାଳ ଆୟସୀ ଗଦା ଧରି ଅନାୟସେ
ଆସୁଛନ୍ତି ମାଲବେଶେ ମାଳବନିବାସୀ (୫)
ଦ୍ୱାରଦ୍ରଧୂଳିରେ ରଙ୍ଗ ବୋଳି ଖାରତନୁ
ଜାହ୍ନବୀ-ଯମୁନା-ବେଣୀ-ମଥାମଣି-ରୂପୀ
ଶସ୍ୟଶାଳୀ ବ୍ରହ୍ମଦେଶୁ ଆସୁଛନ୍ତି ସାଦୀ (୬)
ଦଳେ ଦଳେ ଅଶ୍ୱପୃଷ୍ଠେ ପିତ୍ତଳବର୍ମିତ, (୭)
ଗୁବା ଉଚ୍ଚାବଚ ଢାଲ ଦେ ଲଇ ଚରମେ,

---

(୧) ବୈରାଟରାଜ୍ୟ ରାଜପୁତାନା ଅନ୍ତର୍ଗତ । ସମ୍ବର ହ୍ରଦର ଅଦୂରବର୍ତ୍ତୀ ବୈରାଟବାସୀମାନେ ପ୍ରାଂଶୁକାୟ ବୋଲି ପ୍ରସିଦ୍ଧ ଥିଲେ । ସୈନିକକାର୍ଯ୍ୟ ନିମନ୍ତେ ଏମାନେ ବିଶେଷ ଉପଯୋଗୀ ବୋଲି ଭାରତବର୍ଷରେ ସର୍ବତ୍ର ଆଦୃତ ହୋଇଥିଲେ । (୨) ମଥୁରା ଅଞ୍ଚଳର ଲୋକମାନେ ସୌରସେନ ଆଖ୍ୟାରେ ଆଖ୍ୟାତ ହୋଇଥିଲେ । ଉରସିଲ—ବିଶାଳବକ୍ଷାଃ । (୩) ଶାଣିତ—ପାଣିଦିଆ । (୪) ଚର୍ମଣ୍ୱତୀ—ଚମ୍ବଲ ନଦୀ । (୫) ମାଳବ—ମାଳବା । (୬) ଦୋଆବର ପ୍ରାଚୀନ ନାମ ବ୍ରହ୍ମଦେଶ । ସାଦୀ—ଅଶ୍ୱବାର । (୭) ବର୍ମିତ—ବର୍ମଧାରୀ ।

Digitized by PPRACHIN, SOA

କରେ ଖରଶାଣ ଭଲ୍ଲ ପର ହୃଦ ଭେଦୀ
ସରଯୂ ତମସା ପୁଣି ଗୋମତୀ ତଟିନୀ (୧)
ତୀରଦେଶୁଁ ଆସୁଛନ୍ତି ସୂର୍ଯ୍ୟବଂଶୀ ବୀରେ
ମହୋତ୍ସାହେ, ତୋଳି ସୂର୍ଯ୍ୟଲାଞ୍ଛିତ ପତାକା
ପୃଷ୍ଠଦେଶେ ଦୋଳେ ଫୁଲ୍ଲପତ୍ରିତ ତୂଣୀର
ଯମଦଂଷ୍ଟ୍ରା-ସହଚର ଶର ଦକ୍ଷକରେ,
ସବ୍ୟେ ଧନୁ ଟାଣରେ ଯା ଗୁଣ କର୍ଣ୍ଣେଯାଏ
ଶତ୍ରୁ-ସୀମନ୍ତିନୀ-କର୍ଣ୍ଣୁ, ବେଗେ ପଡ଼େ ଝଡ଼ି
କର୍ଣ୍ଣୋତ୍ପଳ, ତୁଟେ କରୁକଙ୍କଣ ଟଙ୍କାରେ (୨)
ମହାଖରସ୍ରୋତସ୍ୱତୀ, ପୂତ-ଶିଳାମୟୀ
ଗଣ୍ଡକୀର ତୀର ଶୁନ୍ୟ ରୁଣ୍ଡୀଭୂତ ଆସି (୩)
ନର୍ମୋକନିର୍ମୁକ୍ତ ତମ୍ବ୍ରାସ୍ୟେ କମ୍ପ୍ରଦ (୪)
ନାଚିତ ଧାରଣୀ ସୀରଲାଞ୍ଛିତ-ଧ୍ୱଜମ
ମୈଥିଳାଖ୍ୟ,ମହାଦକ୍ଷ ବିପକ୍ଷ ଦଳନେ (୫)
ମାଳେ ମାଳେ ଉଭା ସେହି ବିଶାଳ ପ୍ରାନ୍ତରେ
ବିନ୍ଧ୍ୟେଶ୍ୱରୀ ଦେବୀଭକ୍ତ ସଦା ଦ୍ୱନ୍ଦପ୍ରିୟ (୬)

---

(୧) ସରଯୂ, ତମସା, ଗୋମତୀ ଅବଧରାଜ୍ୟର ନଦୀ । ତମସାର ଆଧୁନିକ ନାମ ତଁସା । (୨) ଏହି ଯୋଦ୍ଧାମାନେ ଧନୁର୍ଗୁଣ ନିଜ କର୍ଣ୍ଣ ପର୍ଯ୍ୟନ୍ତ ଆକର୍ଷଣ କଲାମାତ୍ରେ ଶତ୍ରୁ ରମଣୀମାନଙ୍କ କର୍ଣ୍ଣରୁ କର୍ଣ୍ଣୋତ୍ପଳ ଝଡ଼ିପଡ଼େ; ଏମାନଙ୍କର ଧନୁଷ୍ଟଙ୍କାର ଶବ୍ଦରେ ଶତ୍ରୁରମଣୀମାନଙ୍କ କଙ୍କଣ ଭଗ୍ନ ହୁଏ, ଅର୍ଥାତ ସେମାନେ ବିଧବା ହୁଅନ୍ତି । (୩) ଗଣ୍ଡକୀ ମିଥିଳାରେ ପ୍ରବାହିତ । ପବିତ୍ର ଶିଳା ସକାଶେ ଏହି ନଦୀ ପ୍ରସିଦ୍ଧ । (୪) କାତ ଛାଡ଼ିଥିବା ତମ୍ବସାପ ପରି ଭୟଙ୍କର । (୫) ମୈଥିଳ ରାଜାଙ୍କ ପତାକା ଲଙ୍ଗଳଲାଞ୍ଛିତ ଥିଲା । ଏହି ହେତୁରୁ ରାଜର୍ଷି ଜନକଙ୍କର ଅପର ଆଖ୍ୟା ସୀରଧ୍ୱଜ । (୬) ବିନ୍ଧ୍ୟେଶ୍ୱରୀ ମିରଜାପୁର ସହରର ନିକଟବର୍ତ୍ତୀ ସ୍ଥାନରେ ଗଙ୍ଗାତଟରେ ବିନ୍ଧ୍ୟବାସିନୀ ଦେବୀଙ୍କର ମନ୍ଦିର ପ୍ରତିଷ୍ଠିତ ।

Digitized by PPRACHIN, SOA

ଯୋଦ୍ଧୃବୃନ୍ଦ, ବଳିପଶୁଶୋଣିତେ ପିଶୁନ
ତୀକ୍ଷ୍ଣଧାର ଖଡ୍‌ଗହସ୍ତେ, ବାଳାର୍କପ୍ରତିମା
ଶୋଭଇ ସିନ୍ଦୂରଚର୍ଚ୍ଚିତା ପ୍ରଶସ୍ତ ଲଲାଟେ,
ଦେବୀଙ୍କ ବାହନ ସିଂହ ଶୋଭେ ଧ୍ୱଜପଟେ,
ଜ୍ୟୋତିର୍ମୟ ସିଂହ ଆହା, ରଶ୍ମିଚକ୍ରେ ଯଥା,
ମହାଜବ ପୃଷ୍ଠ୍ୟ ପୃଷ୍ଠେ ଆସେ ଆସ୍କନ୍ଦିତେ (୧)
କାଳଦଣ୍ଡ ପ୍ରାୟେ କୁନ୍ତ ମୁଷ୍ଟି ପୀଡ଼େ ଧର (୨)
କର୍ଣ୍ଣକୁଳତନ୍ତୁ-ବୃଷକେତୁବଂଶଧର (୩)
ଉଡ଼ାଇ ବୃଷାଙ୍କ ବାନା, ଅଙ୍ଗଦେଶୀସେନା, (୪)
ଶ୍ୱେତ-ମଣି-ଶିଳା-ଦ୍ରୋଣୀ-ବହମାନନର୍ମଦା (୫)
ତୀରବନେ ଅନୁକ୍ଷଣେ ମୃଗୟା-ବିନୋଦୀ
ଆସନ୍ତି ଅମିତ୍ରଚ୍ଛେଦୀ ଚେଦୀ ମହାବୀରେ
ମହୋଜ୍ଜ୍ୱଳ ମରକତ ଅବତଂସଧାରୀ, (୬)
ଘନ-ତାଳୀ-ବନାକୀର୍ଣ୍ଣ ଜଳଦୁର୍ଗବାସୀ, (୭)

---

(୧) ମହାଜବ— ବେଗଗାମୀ । ପୃଷ୍ଠ୍ୟ—ତଟ୍ଟୁଘୋଡ଼ା । ଆସ୍କନ୍ଦିତ—କଦମ । (୨) କୁନ୍ତ ଅସ୍ତ୍ରବିଶେଷ । ମୁଷ୍ଟିପୀଡ଼େ—ଦୃଢ଼ମୁଷ୍ଟିରେ । (୩) ବୃଷକେତୁ—କର୍ଣ୍ଣପୁତ୍ର । (୪) ମୁଙ୍ଗେର ପ୍ରଭୃତି ଅଞ୍ଚଳର ନାମ ଅଙ୍ଗଦେଶ । କର୍ଣ୍ଣଙ୍କ ଉତ୍ତାରୁ ତାହାଙ୍କ କନିଷ୍ଠପୁତ୍ର ବୃଷକେତୁ ଅଙ୍ଗଦେଶରେ ରାଜପଣ କରିଥିଲେ । (୫) ଶ୍ୱେତମଣି ଶିଳାଦ୍ରୋଣୀ—ଶ୍ୱେତବର୍ଣ୍ଣ ମାରବଲ ପର୍ବତର ଉପତ୍ୟକା । ମଧ୍ୟ ଭାରତବର୍ଷରେ ଜବଲପୁରର ନିକଟବର୍ତ୍ତୀ ଭେଡ଼ାଘାଟ ନାମକ ସ୍ଥାନରେ ନର୍ମଦାର ସ୍ୱଚ୍ଛ ଜଳସ୍ରୋତ ଧବଳର ମାରବଲ୍ ପ୍ରସ୍ତରର ଦ୍ରୋଣୀରେ ପ୍ରବାହିତ । ଏହି ସ୍ଥାନ ଭାରତବର୍ଷର ଗୋଟିଏ ପ୍ରଧାନ ଦୃଶ୍ୟ । ନର୍ମଦାର ସୁପ୍ରସିଦ୍ଧ ଧୂଆଁଧର ପ୍ରପାତ ଏହାର ଅଦୂରବର୍ତ୍ତୀ । (୬) ଜବଲପୁର ପ୍ରଭୃତି ଚେଦୀ ରାଜ୍ୟର ଅନ୍ତର୍ଭୁକ୍ତ ଥିଲା । ମରକତ ଖଣିବିଶିଷ୍ଟ ପାନ୍ନାନଗରୀ ଚେଦୀ ରାଜ୍ୟର ଅନ୍ତର୍ଗତ ଥିଲା । (୭) ତାଳୀବନ— ହିନ୍ତାଳବନ । ସମୁଦ୍ର-ତୀରବର୍ତ୍ତୀ ଦେଶମାନ ହିନ୍ତାଳବନାକୀର୍ଣ୍ଣ ।

Digitized by PPRACHIN, SOA

ଅଜସ୍ର କ୍ଷେପଣୀକ୍ଷେପେ ବଜ୍ରଦୃଢବପୁ । (୧)
ଗାଙ୍ଗେୟ-ତରଙ୍ଗ ଚଳମତ୍ସ୍ୟଭେଦେ ପଟୁ
ସାବେଲ ଖର୍ପର ବଳ ସ୍ଥାବେଳର ଶିକ୍ଷା, (୨)
ସ୍କନ୍ଧେ ଥୋଇ ଆସୁଅଛୁ ଅମନ୍ଦ ବିକ୍ରମେ
ବଙ୍ଗଦେଶୀ ରଣରଙ୍ଗ-ରସିକ ପୃତନା । (୩)
ହିମାଦ୍ରି-ନିଃସ୍ୟନ୍ଦନର ପ୍ରବାହେ ପ୍ଲାବିତ,
ଶାର୍ଦ୍ଦୂଳସେବିତ-ପ୍ରାଂଶୁ-ତୃଣବନାକୁଳ (୪)
ପୌଣ୍ଡ୍ର ଦେଶୁଁ ଆସୁଅଛୁ ବାର୍କ୍ଷଦୁର୍ଗବାସୀ (୫)
ରଣରୁଷ୍ଟ-ଅନୀକିନୀ ଅନିବର୍ତ୍ତୀ ରଣେ, (୬)
ରିପୁବର-ଛିନ୍ନକାରୀ, ବରଚ୍ଛୁଧାରିଣୀ; (୭)
ଆହନ୍ତ ଆୟସ-ଦେହତ୍ରା-ଆଚ୍ଛନ୍ନ-ଶରୀରେ (୮)
ଧୂପଖଣ୍ଡାଧାରୀ, ଚଣ୍ଡରିପୁଦଣ୍ଡଦାତା, (୯)
କଳପି-ମଣ୍ଡିତ-ଗଣ୍ଡ ଉତ୍କଳ-ପ୍ରବୀରେ,

---

(୧) ସର୍ବଦା ଆହୁଲବୁହା ହେତୁରୁ ସେମାନଙ୍କର ପେଶୀ ସୁଦୃଢ଼ । (୨) ସାବେଲ—ଅସ୍ତ୍ରବିଶେଷ । (୩) ପୃତନା—ସେନା । ପୂର୍ବବଙ୍ଗ ଜଳାକୀର୍ଣ୍ଣ ଏହି ହେତୁରୁ ବଙ୍ଗୀୟ ଯୋଦ୍ଧାମାନଙ୍କୁ 'ନୌସାଧନୋଦ୍ୟତାନ୍’ ବିଶେଷଣ ଏହି ହେତୁରୁ ଦେଇଥିଲେ । ଓଡ଼ିଶାରେ କୁଜଙ୍ଗ ପାରିକୁଦ ପ୍ରଭୃତି ସ୍ଥାନମାନଙ୍କୁ ଜଳଦୁର୍ଗ ବୋଲାଯାଇପାରେ । (୪) ବ୍ୟାଘ୍ରସଙ୍କୁଳ ବୃହତ୍ ଘାସ-ବନପୂର୍ଣ୍ଣ । (୫) ପୌଣ୍ଡ୍ରଦେଶ—ହିମାଳୟର ପାଦଦେଶସ୍ଥିତ ରାଜସାହି ପ୍ରଭୃତି ଅଞ୍ଚଳ । ବାର୍କ୍ଷଦୁର୍ଗବୃକ୍ଷଘଟିତ ଦୁର୍ଗ । ବର୍ତ୍ତମାନସୁଦ୍ଧା ଅନେକ ରାଜା ଏବଂ ଜମିଦାରମାନଙ୍କ ଗଡ଼ ନିବିଡ଼ ବାଉଁଶ ବନ ବେଷ୍ଟିତ ଦେଖାଯାଏ । (୬) ରଣରୁ ଯେଉଁମାନେ ନିବୃତ୍ତ ହେବାର ନୁହନ୍ତି । (୭) ରିପୁବରଚ୍ଛିନ୍ନକାରୀ—ପ୍ରଧାନ ଶତ୍ରୁ ଛେଦକ । (୮) ଲୌହୋକଣ୍ଟକାବୃତ ଦେହରେ । (୯) ଧପଖଣ୍ଡା—ଅଧୁନା ଲୁପ୍ତ ଖଡ୍ଗବିଶେଷ

Digitized by PPRACHIN, SOA

ଦ୍ୱିରୁକ୍ତ କେବଳ ସିନା ଚନ୍ଦ୍ରୋତ୍କଳଭୂଷା
ଯାହାଙ୍କର ଚନ୍ଦ୍ରହାସବ୍ରଣାଙ୍କିତ ଦେହେ (୧)
ଆସୁଛନ୍ତି ନେପାଳୀଏ ମହାବୀର୍ଯ୍ୟଶାଳୀ,
ଖର୍ବଦେହ ମାତ୍ର ରଣେ ପର୍ବତ ପରିଷ୍ଟେ
ଅଚଳ, ଛଟକେ ରିପୁ କଣ୍ଟକ-ସଂହାର, (୨)
କଟିଦେଶେ ବଲମ୍ବିତ କଟାକ୍ଷ ପିଧାନେ, (୩)
ଙ୍କାଯୂଥ-କର୍ଣ୍ଣଶୋଭି-ପ୍ରବେଣୀ-ଆବୃତ, (୪)
ଙ୍ଗେନ୍ଦ୍ରାଗାର-ଖଣ୍ଡଗିରି ପ୍ରାନ୍ତେ-ମଦସ୍ରାବୀ (୫)
ହସ୍ତେ ଦନ୍ତାବଳଯଷ୍ଟା ଦଶନ୍ତ-ନିର୍ଘୋଷୀ
ଘନଘଣ୍ଟାରବେ, ପୁଣି ଭୈରବ ବୃଂହିତେ, (୬)
ବ୍ୟାଘ୍ର-ଚର୍ମ ଅଙ୍ଗତ୍ରାଣେ ସର୍ବାଙ୍ଗ ଆବରି
ଆସନ୍ତି ଷର୍ଦ୍ଦିସ୍ତେ କର୍ମନାଶା-ତୀରବାସୀ
ବକ୍ର, ବପୁଃ କଷ୍ଟସହ, ନିଷ୍ଠୁର ଯେସନେ
ନିଷ୍ଠୁର ଅକର୍ମଶିଳା କର୍ମନାଶା-ସ୍ରୋତେ (୭)
ହସ୍ତେ ଶାର୍ଙ୍ଗଧନୁଃ ତୁଣ୍ଡେ ନିଷଙ୍ଗେ ପୂରିତ
ଅଗ୍ରିତ ମାରଣ-ପଟୁ ଆୟୁଧ ବାଛୁଳ.

---

(୧) ଚନ୍ଦ୍ରହାସ – ଖଡ୍ଗ । ସୈନ୍ୟମାନଙ୍କ ଦେହର ଖଡ୍ଗାଘାତର ଚିହ୍ନ ଥିଲା । ତାହା ସେମାନଙ୍କର ସର୍ବୋତ୍କୃଷ୍ଟ ଭୂଷଣ । ସେମାନଙ୍କ ଦେହରେ ଆଉ ଯେଉଁ ଭୂଷଣ ଥିଲା, ତାହା ଦ୍ୱିରୁକ୍ତ ମାତ୍ର, ଅର୍ଥାତ୍ ନିଷ୍ପ୍ରୟୋଜନ । ଅସ୍ତ୍ରବ୍ରଣଙ୍କଠାରୁ ବୀରମାନଙ୍କର ଉତ୍କୃଷ୍ଟ ଭୂଷଣ ଆଉ ନାହିଁ । (୨) ନେପାଳର ଗୁରୁଖା ସୈନ୍ୟ ଖର୍ବକାୟ, ମାତ୍ର ଅତ୍ୟନ୍ତ ସାହସୀ ଏବଂ ରଣଦକ୍ଷ । (୩) ପିଧାନ—କୋଷ । କଟାକ୍ଷ—ଅସ୍ତ୍ରବିଶେଷ । (୪) ପ୍ରବେଣୀ—ହସ୍ତୀର ପୃଷ୍ଠାସ୍ତରଣ । (୫) ଖଣ୍ଡଗିରି— କ୍ଷୁଦ୍ରଶୈଳ (୬) ବୃଂହିତ—ହସ୍ତୀ ଗର୍ଜନ (୭) କର୍ମନାଶା ନଦୀ ବିହାର ଅନ୍ତର୍ଗତ ଭୋଜପୁର ନିକଟବର୍ତ୍ତୀ; ଭୋଜପୁରବାସୀଙ୍କ ପ୍ରକୃତ ପ୍ରାବଚନିକ ପ୍ରସିଦ୍ଧି ଲାଭ କରିଅଛି ।

Digitized by PPRACHIN, SOA

ଆପୂରନ୍ତି ଭିଲ୍ଲସେନା ଏକମୂନାଧାର, (୧)
ବିନ୍ଧ୍ୟଗିରି-ବନଗଜ-ମୃଗଯୂଥାକୌରକ୍ଷୀ,
ଅଞ୍ଜନାଭ, ଗୁଞ୍ଜାମାଳେ ମଣ୍ଡିତ ବିଗ୍ରହ,
ମଧୂକ-ମଦିରାପାନେ ରକ୍ତାକ୍ତ ସରବେ, (୨)
ଘନ ଘନ କଟିତଟେ ବାଜେ ଘର୍ଘରିକା, (୩)
ସ୍ଥିତିନାହିଁ ଦେଖିବାକୁ ଏ ମହାମିଳନେ
ନିଜ ନିଜ ପତାକିନୀ ବିଶ୍ୱବିଜୟିନୀ
ଉଜ୍ଜୟିନୀ ମହାକାଳ-ପାଳିତା ନଗରୀ,
ନିରତେ ଶୀତଳ ସିପ୍ରା-ତରଙ୍ଗପବନେ (୪)
ନର୍ମଦା-ମେଖଳା ମହାପୁରୀ ମାହିଷ୍ମତୀ;
କାର୍ତ୍ତିବୀର୍ଯ୍ୟ ଖ୍ୟାତେ ଯାହା ବିଶ୍ରୁତ ତ୍ରିଲୋକେ (୫)
ବେତ୍ରବତୀ-ଧୌତ ପୁରୀ ବିଦିଶାଲକ୍ଷଣା, (୬)
ହେଉଛନ୍ତି ଏହିମତେ ଚୂର୍ଣ୍ଣ ସେ ପ୍ରାନ୍ତରେ
କେତେଦେଶୁଁ କେତେ ଜାତି କଳିବ କେ ତାହା
କେ ଗଣିବ ନଭେ ତାରା, ଲହରୀ ଅର୍ଣ୍ଣବେ,
କିଅବା ଚିଲ୍କା-ନୀଳବକ୍ଷେ ହଂସାବଳୀ ? (୭)

---

(୧) ଏକମୂନା—ଶୂଳାକାର ଅସ୍ତ୍ରବିଶେଷ । (୨) ମଧୂକମଦିରା—ମହୁଲ ମଦ । (୩) ଘର୍ଘରିକା—କ୍ଷୁଦ୍ରଘଣ୍ଟି । (୪) ଉଜ୍ଜୟିନୀର ପାଦଦେଶରେ ସିପ୍ରାପ୍ରବାହିତା । ଭଗବାନ ମହାକାଳ ମହାଦେବଙ୍କ ମନ୍ଦିର ହକାଶେ ଉଜ୍ଜୟିନୀ ଭାରତବର୍ଷର ପ୍ରଧାନ ତୀର୍ଥ ମଧ୍ୟରେ ପରିଗଣିତ । (୫) କାର୍ତ୍ତିବୀର୍ଯ୍ୟଙ୍କ ରାଜଧାନୀ ମାହିଷ୍ମତୀ ନର୍ମଦା ତଟରେ ଅବସ୍ଥିତ ଥିଲା । (୬) ବିଦିଶା ଲକ୍ଷଣା—ବିଦିଶା ନାମ୍ନୀ । ବିଦିଶାର ଆଧୁନିକ ନାମ ଭିଲସା । ଏହା ବେତ୍ରବତୀ ଅଥବା ବେତୁଆ ତୀରରେ ଅବସ୍ଥିତ । (୭) ଶରଦାରମ୍ଭରେ ଚିଲ୍କାର ନୀଳବକ୍ଷ ବନହଂସରେ ଧବଳିତ ହୋଇଥାଏ ।

Digitized by PPRACHIN, SOA

କୃଷ୍ଣା ସ୍ୱୟମ୍ବରେ ଯଥା ଲକ୍ଷ୍ୟଭେଦ କାଳେ
ପାଞ୍ଚାଳେ, କଅବା ଇନ୍ଦ୍ରପ୍ରସ୍ଥେ ରାଜସୂୟେ,
କୁରୁକ୍ଷେତ୍ରଯୁଦ୍ଧୋଦ୍ୟୋଗେ ଅଥା ମତ୍ସ୍ୟଦେଶେ
ଅବା ଯଥା ଅଶ୍ୱମେଧେ ହସ୍ତିନାତୋରଣେ
ଦେଖିଥିଲେ ରୁଣ୍ଡ ଆଗେ ପାଣ୍ଡୁକୁଳମଣି
ଅସଂଖ୍ୟ ବାହିନୀ ପୁଣି ଦୃଶ୍ୟ ହେନ୍ତପର
ଦେଖିଲେ ସେ ଆଜ୍ଞା ବସି ଅନଳ ପ୍ରାସାଦେ
ସହ୍ୟଶୈଳେ, ତହୁଁ ତାଙ୍କୁ ଏକ ଏକ କରି
ଚହ୍ନାଇ ଜ୍ୱଳନଦେବ ଅଙ୍ଗୁଳି ନର୍ଦ୍ଦେଶି
ବୋଇଲେ, ଦେଖୁଛ ଯାହା ଘଟିବ ଭରତେ
ବହୁଶତ ବର୍ଷ ଶତେ ଏହି ନବଯୁଗେ,
କଳିପାପେ ବୀର୍ଯ୍ୟହୀନ ହେଲେ ଆର୍ଯ୍ୟଜାତି
ଆରମ୍ଭିବେ ମହାଯୋଗ ଅର୍ବୁଦପର୍ବତେ (୧)
ଭାରତର ହିତକାମେ ଗୁରୁ ମହାତପା—
ବଶିଷ୍ଠ କୃଶାଶ୍ୱଶିଷ୍ୟ ପରାଶର ଭୃଗୁ—
ନିଜ ତେଜଃପୁଞ୍ଜଧାମୁ ମର୍ତ୍ତ୍ୟେ ଅବତରି, (୨)
ପ୍ରତିହାର ପ୍ରମାରକ ଶୁଳୋର ଚୌହାନ—
ନାମଧାରୀ ଜାତି ଚାରି କ୍ଷତ୍ର ମହାବୀରେ
ଜନ୍ମଭୂମି ଲାଗି ଝାସ ଦେବେ ଯଜ୍ଞାନଳେ
ମହାନନ୍ଦେ, ମହାମନା ମୁନିଙ୍କ ଆଦେଶେ;

---

(୧) ଆବୁପର୍ବତ ଆରାବଲୀର ପ୍ରଧାନଶୃଙ୍ଗ । କମ୍ବଦନ୍ତୀ ଅଛି ଯେ, ଭାରତବର୍ଷର ଅଧଃପତନର ସମ୍ଭାବନା ଦେଖି ବଶିଷ୍ଠ, ବିଶ୍ୱାମିତ୍ର, ପରାଶର ଏବଂ ଭୃଗୁମୁନି ପର୍ବତ ଶୃଙ୍ଗରେ ଯାଗାରମ୍ଭ କଲେ । ସେହି ଯାଗାନଳରୁ ଚାରି ମହାବୀର ଆବିର୍ଭୂତ ହେଲେ । ଏହି ବୀରଚତୁଷ୍ଟୟର ସାଧାରଣ ନାମ 'ଅଗ୍ନିକୁଳ' ଅଟେ । (୨) ସପ୍ତର୍ଷିରୂପ ଜ୍ୟୋତିର୍ମୟଲୋକରୁ ।

Digitized by PPRACHIN, SOA

ବୀରବନ୍ଧୁ ଆନେ କେହି ପାରେ କି ମୁରୁଛି;
ଜୀବନର ବ୍ରତ ଲାଗି ଜୀବନର ମାୟା ?
ଜନ୍ମଭୂମି-ଟେକରକ୍ଷା-ହେତୁ କି କେବେ
ଡରଇ ହେ ପଣ୍ଡୁରଣ ପ୍ରାଣରଙ୍କ ପ୍ରାଣୀ ?
ଝାସ ଦେଇ ଯେ ଅନଳେ ଯେହି ଶୂର ବୀରେ
ନବବପୁ ଧରି ପୁଣି ବାହାରିବେ ତହୁଁ
ପ୍ରଦୀପ୍ତକବଚୀ ଖଡ୍ଗୀ ଧୃଷ୍ଟଦ୍ୟୁମ୍ନ ପରି (୧)
ମୋ ଶିଖାରୁ ଜାତ ତେଣୁ ହେବେ ଏହି ବୀରେ,
ବୋଲାଇବେ ଭବେ ତହୁଁ ଅଗ୍ନିକୁଳ ନାମେ,
ଯଥା ନାମେ କର୍ମେ ତଥା ତେଜଃପୁଞ୍ଜରୂପୀ
ଶୋଭିବ ଏ ଦେଶ ଏହି ଶୂର ମହାବୀରେ
ଦନୁଜ-ଦାରଣ-ଦନ୍ତେ ସୁରଗଜ ଯଥା (୨)
ଐରାବତ, ଶୂରଭୁଜେ ଅବା ଦନୁଜାରି, (୩)
ଅବା ସୁରବାଳାଙ୍କର ଜ୍ୟୋତିଃପର୍ଯ୍ୟଙ୍କିକା
ଖୁରରୂପୀ ଭାଦ୍ରପଦ ତାରା ଚତୁଷ୍ଟୟେ; (୪)
ଏହି ଯେ ଦେଖୁଛ ବୀର ଆର୍ଯ୍ୟବରୂଥିନୀ (୫)
ସମବେତ ନାନା ଦିଗଦିଗନ୍ତରୁ ଆସି,
ଜନ୍ମିବେ ସରବେ ଏହି ଶୂର ବୀରକୁଳ (୬)

---

(୧) ଦ୍ରୁପଦଙ୍କ ପୁତ୍ର ଧୃଷ୍ଟଦ୍ୟୁମ୍ନ ଦୀପ୍ତିମାନ କବଚ ଏବଂ ଖଡ୍ଗ ଧାରଣ କରି ଯଜ୍ଞକୁଣ୍ଡରୁ ବାହାରିଥିବା ପ୍ରସଙ୍ଗ ମହାଭାରତରେ ଅନୁସନ୍ଧେୟ । (୨) ଐରାବତର ଶୂରଦନ୍ତ ଥିବାର ପ୍ରସିଦ୍ଧ ଅଛି । (୩) ଦନୁଜାରି ଅର୍ଥାତ୍ ବିଷ୍ଣୁ ଯେପରି ଶୂରଭୁଜଦ୍ୱାରା ପରିଶୋଭିତ । (୪) ଭାଦ୍ରପଦ ତାରାଚତୁଷ୍ଟୟ ପର୍ଯ୍ୟଙ୍କାକାର । (୫) ବରୂଥିନୀ ସେନା । (୬) ଆର୍ଯ୍ୟବର୍ତ୍ତର ଅଧିକାଂଶ ରାଜନ୍ୟବର୍ଗ ଏହି ଶୂର ନାମରେ ଆଖ୍ୟାତ । ଓଡ଼ିଶାର ଅଧିକାଂଶ ରାଜବଂଶ ମଧ୍ୟ ଏହି ବଂଶସମ୍ଭୂତ ।

Digitized by PPRACHIN, SOA

ଭାରତର ନାନା ରାଜ୍ୟେ ରାଜଦଣ୍ଡ ରାଜନ୍
ଏ ବୀରଙ୍କ ବଂଶଧରେ ରଖିବେ ଯତନେ
ଯବନ-ରାହୁର ଗ୍ରାସୁଁ ଭାରତ-ଚନ୍ଦ୍ରମା
ବହୁକାଳ, ମାତ୍ର ତାହା ନ ସମ୍ଭବ କଳି,
କଳିର ପ୍ରେରଣେ ଈର୍ଷା ଅଲକ୍ଷତେ ପଶି
ଭିଆଇବ ପୁଣି କଳି ଭୂପାଳେ ଭୂପାଳେ,
ଜନ୍ମିବେ ଚୌହାନକୁଳେ ଏହି ଦିଲ୍ଲୀପୁରେ
କ୍ଷୀରୋଦୁଁ ପୀୟୂଷ ପ୍ରାୟେ ପୃଥୁ ପୃଥୁଯଶାଃ (୧)
ସଂଗ୍ରାମେ ଅପ୍ରତିରଥ ଯଥା ପାର୍ଥ ରଥୀ (୨)
ଜନ୍ମିବ ରାଠୋରକୁଳେ ସେ କୁଳପାଂଶୁଳ
କ୍ଷୀରୋଦୁଁ ଗରଳ ପ୍ରାୟେ ମୋ ଶିଖରୁ ଅବା
ସମଳ ଅଲକ୍ଷ୍ମୀ ପ୍ରାୟେ କାନ୍ୟକୁବ୍ଜ ପତି (୩)
ମଦମତ୍ତ ଜୟଚନ୍ଦ୍ର ଆର୍ଯ୍ୟଭୂମିଦ୍ରୋହୀ,
ପୃଥ୍ୱୀଙ୍କ ବିକ୍ରମ ଯଶଃ ଶୁଣି ଏ ଦୁର୍ମତି
ଅନୁକ୍ଷଣେ ହେବ ଘାର ସ୍ୱଭାବେ ଭଗାର
ଗୁଣିଙ୍କର, କର୍ଣ୍ଣଶୂଳ ମଣିବ ସେ ସ୍ତୁତି,
ମାତ୍ର କର୍ଣ୍ଣାମୃତରୂପେ ପଶିବ ସେ ବାଣୀ
ବୀରାଙ୍ଗନା ବୀରେନ୍ଦ୍ରଙ୍କ-ସିଂହାସନାର୍ଥିନୀ (୪)

---

(୧) ପୃଥୁଯଶାଃ—ମହାଯଶସ୍ୱୀ । (୨) ଅପ୍ରତିରଥ—ତାହାଙ୍କର ଉପଯୁକ୍ତ ପ୍ରତିଯୋଦ୍ଧା ନାହିଁ, ଅଦ୍ୱିତୀୟ । (୩) କାନ୍ୟକୁବ୍ଜ—ଆଧୁନିକ କନୌଜ । ଜୟଚନ୍ଦ୍ର ପୃଥ୍ୱୀଙ୍କ ଯଶରେ ଈର୍ଷାନ୍ୱିତ ହୋଇ ତାହାଙ୍କୁ ଦମନ କରିବା ସକାଶେ ସର୍ବପ୍ରଥମେ ବୈଦେଶିକମାନଙ୍କର ସାହାଯ୍ୟ ନେଇଥିଲେ । (୪) ବୀରକୋଡ଼ରୂପ ସିଂହାସନ ପ୍ରାର୍ଥିନୀ—ବୀରବନିତା ହେବା ସକାଶେ ଇଚ୍ଛୁକା ।

Digitized by PPRACHIN, SOA

କାନ୍ୟକୁବ୍ଜ-କେନାମଣି-ସଂଯୁକ୍ତା-ଶ୍ରବଣେ (୧)
ସଂଯୁକ୍ତା ସୁନ୍ଦରୀପଣେ ଅତୁଳା ଭୂତଳେ,
ରାଠୋର-କଳଙ୍କ ଜୟଚନ୍ଦ୍ରର ଔରସେ
ପ୍ରସୂତା,ପଙ୍କିଳ ସରୁଁ ଯଥା ପଙ୍କଜନୀ;
ସୁନ୍ଦରୀ-ମୋହନମନ୍ତ୍ର ନୁହେ କେଉଁ କାଳେ
କେଉଁ ଦେଶେ ହେ ବୀରେନ୍ଦ୍ର ବୀର ଯଶୋଗାଥା
ପୃଥ୍ୱୀଙ୍କ ଯେ ଯଶୋଗାଥା ଜାଳିବ ଯେତକ
କ୍ରୋଧ ପ୍ରତ୍ନହୃଦେ, ପ୍ରେମ ସେତକ ସେ ପୁଣି
ଜାଳିଦେବ ସମକାଳେ ଦୁହିତୃହୃଦୟେ,
ରାଜସୂୟଯଜ୍ଞେ ଜେମା ସ୍ୱୟମ୍ବର-ବିଧି
ତିଆଇଲେ ଜୟଚନ୍ଦ୍ର କାନ୍ୟକୁବ୍ଜପୁରେ,
ଲେଖା ପାଇ ଭାରତର ଦିଗଦିଗନ୍ତରୁ
ଆସିବେ ସେ ରାଜସୂୟେ ରାଜନ୍ୟମଣ୍ଡଳୀ,
ମାତ୍ର ନ ରସିବେ ପୃଥ୍ୱୀ, ପ୍ରତିବନ୍ଧିରୂପେ
ପୃଥ୍ୱୀଙ୍କର ପ୍ରତିରୂପ ଗଢ଼ାଇ କାଞ୍ଚନେ
ଥୁଆଇବ ଜୟଚନ୍ଦ୍ର ରାଜସଭାତଳେ,
ଉପେକ୍ଷି ସେ ସ୍ୱୟମ୍ବରେ ପିତୃବଚନ୍ଦ୍ରନ୍ଦରୀ
ନୃପକୁଳେ ଉପେକ୍ଷି ସେ ପିତାର ଭ୍ରୂକୁଟି
ସେହି ପ୍ରତିମାର ଗଳେ ଦେବେ ବରମାଳା
ସଂଯୁକ୍ତା, ରାଠୋର-ସରେ ମଞ୍ଜୁ ସରୋଜିନୀ

---

(୧) ରାଠୋରରାଜ ଜୟଚନ୍ଦ୍ରଙ୍କର କନ୍ୟା ସଂଯୁକ୍ତା । ତାଙ୍କର ସ୍ୱୟମ୍ବର ଭାରତ ଇତିହାସରେ ଗୋଟିଏ ପ୍ରଧାନ ଘଟଣା । ଭାରତବର୍ଷର ସ୍ୱାଧୀନତାଲୋପ ଏହି ଘଟଣାର ଗୌଣ ଅଟେ ।

Digitized by PPRACHIN, SOA

ଦଳୀର ଗୈହାନ-ରବ ପ୍ରେମସ୍ପୃହାବତୀ, (୧)
ମନସ୍ୱିନୀ ବାଳାର ଏ ବିଷମ ସାହସ
ଦେଖି ହେବେ ସମବେତ ବ୍ରଜନ୍ୟ ଚକିତ,
ଚମକେ ଚମକ ପୁଣି ଭିଆଇବ ତହିଁ,
ପୃଥୁଙ୍କ ସଂଗ୍ରାମ-ଶିଙ୍ଗା-ଘୋଷ ବନ୍ଧିଘୋଷେ
ଅଦୂରେ ସହସା ସେହି ସ୍ୱୟମ୍ବର ସଭା
କମ୍ପାଇବ ଅଶ୍ୱବାର-ଅଶ୍ୱଖୁରଟାପୁ (୨)
ହେମବର୍ମାବୃତବପୁ ବଲ୍ଗଶ୍ୱବାହାନେ (୩)
କୃପାଣଦ୍ୱିତୀୟ ପୃଥୁ ରକ୍ଷିଦଳ ଭେଦି, (୪)
ଚମକେ ଜଳକା ପ୍ରାୟ ରାଜାଙ୍କ ସମ୍ମୁଖେ
ଉଲ୍କାବେଗେ ଆସି ବୀର୍ଯ୍ୟଶୁଲ୍କା ରୂପସୀକି (୫)
ଅନୁକୂଳ ବଳାତ୍କାରେ ନେଇଯିବେ ହରି
ସଭାତଳୁ, ସୁଭଦ୍ରାକୁ ଯେସନେ ଫାଲଗୁନି (୬)
କମ୍ବା ମେଘାକର୍ଷୀ ମହାଚଣ୍ଡ ପକ୍ଷବେଗେ (୭)
ହେମାଙ୍ଗପକ୍ଷୀନ୍ଦ୍ର ବଳେ ହରଲେ ଅମୃତ
ସୁରେନ୍ଦ୍ର-ରକ୍ଷିତ ଶଶିମଣ୍ଡଳୁ ଯେସନେ,
ପୃଥୁର ଏ ବୀର-ଯଶଃ କ୍ଷାର ପ୍ରାୟେ କ୍ଷତେ
ଜାଳିଦେବ ରୋଷାନଳ ଜୟଚନ୍ଦ୍ର-ହୃଦେ,

---

(୧) ଗୈହାନରବ—ପୃଥୁ । ସଂଯୁକ୍ତା ପୃଥୁଙ୍କର ସୁବର୍ଣ୍ଣ ପ୍ରତିମାର ଗଳଦେଶରେ ବରମାଳ୍ୟ ଦେଇଥିବାର କଥା ଇତିହାସରେ ପ୍ରସିଦ୍ଧ । (୨) ଅଶ୍ୱବାର—ଅଶ୍ୱାରୋହୀ । (୩) ବଲ୍ଗଶ୍ୱ—ଉତ୍କୃଷ୍ଟ ଘୋଡ଼ା । (୪) କୃପାଣ ଦ୍ୱିତୀୟ—ଅସି ଯାହା ଏକମାତ୍ର ସଙ୍ଗୀ । (୫) ବୀର୍ଯ୍ୟଶୁଲ୍କା ରୂପସୀ କେବଳ ବୀର୍ଯ୍ୟ ରୂପ ଶୁଲ୍କ ପ୍ରଦାନ ଦ୍ୱାରା ଯେଉଁ ସୁନ୍ଦରୀ ଲଭ୍ୟା । ବୀର ବ୍ୟତୀତ ଅନ୍ୟର ଅଲଭ୍ୟା । (୬) ଅର୍ଜୁନକର୍ତ୍ତୃକ ସୁଭଦ୍ରାହରଣ ପ୍ରସଙ୍ଗ ମହାଭାରତରେ ଅନୁସନ୍ଧେୟ । (୭) ପ୍ରଚଣ୍ଡ ପକ୍ଷବେଗଦ୍ୱାରା ମେଘକୁ ଯେ ଆକର୍ଷଣ କରେ ।

Digitized by PPRACHIN, SOA

ପରିଣାମ ପ୍ରତି ଅନ୍ଧ ବୈରନିର୍ଯ୍ୟାତନେ (୧)
ଦୁଷ୍ଟମତି ଜାମାତାର ନିଧନ ମନାସି
ଶରଣାର୍ଥୀ ହେବ ଯାଇ ଯବନର ପଦେ,
ବାହ୍ୟେ ଛୋରି, ନିରନ୍ତର କୁଟିଳ ଅନ୍ତରେ
ଛଦ୍ମାର୍ଥୀ ଯବନପତି ଆର୍ଯ୍ୟନିର୍ଯ୍ୟାତନୁ (୨)
ଆର୍ଯ୍ୟୋଦ୍ଧାରବ୍ରତଛଳେ ପଶିବ ଏ ଦେଶେ
ସ୍ୱଦଳେ, ଯେ ଦଳେ ପୁଣି ଆର୍ଯ୍ୟକୁଳାଙ୍ଗାରେ
ମିଶାଇବେ ନିଜ ସେନା ଆର୍ଯ୍ୟ ଧ୍ୱଂସଲାଗି;
ପୃଥ୍ୱୀଙ୍କ ଭଗିନୀ ପତି ଅଜାମିଳ-ପତି (୩)
ଅମର୍ଷୀ ଅମିତତେଜା ପରପୁରଞ୍ଜୟୀ, (୪)
ପୃଥ୍ୱୀଙ୍କ ସହାୟ ହୋଇ ଯୁଝିବେ ସଂଗ୍ରାମେ
ଯବନପତିର ସହ, ପୁଣି ଯବନର
ପଦଲେହୀ ଆର୍ଯ୍ୟଦ୍ରୋହୀ ଜୟଚନ୍ଦ୍ର ସହ

---

(୧) ଶତ୍ରୁ ଉପରେ ଦାଉ ସାଧିବାକୁ ଯାଇ ପରିଣାମରେ ଯେ ନିଜର ଏବଂ ସ୍ୱଦେଶର ସର୍ବନାଶ ହେବ ସେ ବିଷୟରେ ଅନ୍ଧ । (୨) ଅନାର୍ଯ୍ୟମାନଙ୍କଦ୍ୱାରା ଆର୍ଯ୍ୟମାନେ ଉତ୍ପୀଡ଼ିତ ହେଉଅଛନ୍ତି, ସେଥିରୁ ସେମାନଙ୍କୁ ଉଦ୍ଧାର କରିବା ଛଳନାରେ ଯବନରାଜ ସସୈନ୍ୟରେ ଭାରତବର୍ଷକୁ ଆସିବେ । ପରରାଜ୍ୟ-ଲୋଲୁପ ରାଜାଙ୍କର ଏ ଗୋଟିଏ ଚିର ପ୍ରସିଦ୍ଧ କୌଶଳ । ଜିଗୀଷାକୁ ଧର୍ମର ବହିରାବରଣରେ ଆବୃତ କରି ସେମାନେ ନିଜର ଦୁରଭିସନ୍ଧି ଚରିତାର୍ଥ କରନ୍ତି । (୩) ଏହି ସମୟରେ ବୀରମାନଙ୍କର ମଧ୍ୟରେ ଦିଲ୍ଲୀପତି ପୃଥ୍ୱୀ ପ୍ରଥମ ସ୍ଥାନୀୟ ଏବଂ ଆଜମିରପତି ଅମର୍ଷୀ ଦ୍ୱିତୀୟସ୍ଥାନୀୟ; ଭାରତବର୍ଷର ସ୍ୱାଧୀନତା-ରକ୍ଷା ସକାଶେ ଏହି ଦୁଇବୀର ଜୀବନୋତ୍ସର୍ଗ କରି ମର୍ତ୍ତ୍ୟ-ଅମରତା-ଲାଭ କରିଅଛନ୍ତି । ରାଜପୁତନାର ମହାକବି ଚାନ୍ଦଙ୍କ ଲେଖନୀ ପୃଥ୍ୱୀଙ୍କ ପ୍ରତିଷ୍ଠାକୁ ଅବିନଶ୍ୱର କରି ଲେଖିଅଛି । (୪) ପରପୁରଞ୍ଜୟୀ—ଶତ୍ରୁନଗରଜେତା ।

Digitized by PPRACHIN, SOA

ସିକ୍ତ କରି କୁରୁକ୍ଷେତ୍ର ଯବନ ଶୋଣିତେ (୧)
ତଡ଼ିବେ ଯବନସେନା ଭାରତ ଭିତରୁଁ,
ହେବ ଆର୍ଯ୍ୟଙ୍କରେ ଆର୍ଯ୍ୟଗୌରବର କେତୁ,
ତେଜସ୍ୱୀ ଅଗ୍ରତେ ନତମସ୍ତକ ଯବନ
ପୃଥ୍ୱୀପାଶେ ପ୍ରାଣ ଭିକ୍ଷା କରି କର ଯୋଡ଼ି
ପଳାଇବ ନିଜଦେଶେ ଦଳବଳ ସହ,
ଦଣ୍ଡ ଶକ୍ତି ସତ୍ତ୍ୱେ କ୍ଷମା ଆର୍ଯ୍ୟ ଧର୍ମନୀତି,
ତେଣୁ ଦସ୍ୟୁସିନ୍ଧୁ ଆର୍ଯ୍ୟଧୁରନ୍ଧର ପୃଥ୍ୱୀ
ଅରିକି ବିପନ୍ନ ଦେଖି ଆଚରିବେ କ୍ଷମା ।
ମାତ୍ର ଆତ୍ମଦ୍ରୋହ ସିନା କ୍ଷମା ଅଭାଜନେ ! (୨)
ଅଭାଜନେ ଏହି କ୍ଷମା ପୃଥ୍ୱୀ ପ୍ରତି ତେଣୁ
ପରିଣାମେ ହେବ ମହା ଅନର୍ଥର ହେତୁ;
ଭୋଗତୃଷ୍ଣାବଶେ ରତ ପରସ୍ୱ-ହରଣେ,
ଦୁର୍ମତି ଯବନ ବେଗେ ଭାରତୁଁ ପଳାଇ
[ଦୃଷ୍ଟପୂର୍ବ ରୂପସୀକି ଲମ୍ପଟ ଯେସନେ]
କି ସ୍ୱପନେ, କି ଜାଗ୍ରତେ ଧ୍ୟାଇବ ଅବିରତେ
ଭାରତର ଏହି ଶସ୍ୟଶ୍ୟାମଳା ବସୁନ୍ଧରା, (୩)
ପୁଣି ଦ୍ରବେଶରେ ଆଶେ ରହିଥିବା ଟାକି,
ଦୂତ ପେଷି ଜୟଚନ୍ଦ୍ର ଆଣିବ ଆହ୍ୱାନ
ପୁଣି ଏ ଭାରତେ ତାକୁ, ବିନାଶ-ମନାସି

---

(୧) ପୃଥ୍ୱୀଙ୍କ ସହିତ ଯବନପତିଙ୍କ ଯୁଦ୍ଧ କୁରୁକ୍ଷେତ୍ରରେ ହୋଇଥିଲା ।
(୨) ଦୁଷ୍ଟକୁ କ୍ଷମା, ନିଜର ସର୍ବନାଶର ନାମାନ୍ତର ମାତ୍ର । (୩) ଶସ୍ୟଶ୍ୟାମଳା—ଶସ୍ୟଯୋଗୁଁ ଶ୍ୟାମମୟୀ ଶସ୍ୟଶୋଭିତା ।

Digitized by PPRACHIN, SOA

କାମାଚାର, ଆତ୍ମନାଶ-ଅଧିବାସ ରୂପେ (୧)
ସାମାନ୍ୟ-ଶତ୍ରୁର ଏହି ଅଭିଯାନ-ରବେ (୨)
ଭାରତର ନାନା ଦେଶୁଁ ଆସିବେ କ୍ଷତ୍ରିୟେ
ଦିଲ୍ଲୀପୁରେ ଦିଲ୍ଲୀପତି ନିମନ୍ତ୍ରଣ ପାଇ,
ସେ ଭବିଷ୍ୟ ଦୃଶ୍ୟ ଏବେ ଦିବ୍ୟାଞ୍ଜନ-ଯୋଗେ
ଦିଶୁଛି ତୁମ୍ଭର ନେତ୍ରେ ବର୍ତ୍ତିମାନମତି ।" (୩)
ଉତ୍ତରିଲେ ସବିସ୍ମୟେ ପାଣ୍ଡୁ-ଚୂଡ଼ାମଣି,
'ଶତଭ୍ରାତା କୁରୁ ପଞ୍ଚ ପାଣ୍ଡବ ସହିତେ
ଥିଲେହେଁ ବିବାଦେ ରତ, ଦେଶବୈରୀ ସହ
ଯୁଝି ଥିଲୁ ଆମ୍ଭେ ହୋଇ ପଞ୍ଚୋତ୍ତର ଶତ,
ଏହି ନୀତି ଅନୁସରି ସର୍ବେ ଏକମେଳେ
ଗନ୍ଧର୍ବ-ବାହିନୀ ସଙ୍ଗେ ଯୁଝି ବନବାସେ

---

(୧) ଯବନପତିଙ୍କୁ ଜୟଚନ୍ଦ୍ରଙ୍କର ଆମନ୍ତ୍ରଣ ତାଙ୍କ ନିଜର ସର୍ବନାଶର ଅଧିବାସ ସ୍ୱରୂପ ହୋଇଥିଲା । ପ୍ରଥମେ ପୃଥ୍ୱୀ ନିହତ ହେଲେ ସତ୍ୟ, ମାତ୍ର ଶେଷକୁ ସେହି ଜୟଚନ୍ଦ୍ର ଯବନପତିଙ୍କ ହସ୍ତରେ ଉତ୍ପୀଡ଼ିତ ଏବଂ ଲାଞ୍ଛିତ ହୋଇ ଗଙ୍ଗାରେ ଝାସ ଦେଇ ଉତ୍କଟ ପାପର ପ୍ରାୟଶ୍ଚିତ୍ତ କଲେ । (୨) ସାମାନ୍ୟ ଶତ୍ରୁ- ସମସ୍ତଙ୍କ ଶତ୍ରୁ । ଅଭିଯାନ—ଦେଶଜୟ ସକାଶେ ଯୁଦ୍ଧଯାତ୍ରା । (୩) ବର୍ତ୍ତିମାନମତି— ପ୍ରତ୍ୟକ୍ଷ ପରି ।

Digitized by PPRACHIN, SOA

ଉଦ୍ଧରିଲୁଁ ଅରି-ହସ୍ତୁ ହେଲେ ସୁଯୋଧନେ (୧)
ଅନ୍ତରେ ଜର୍ଜରଭାବ ନିରନ୍ତର ବହି
ସହିତ ମହିଷ-ଶୃଙ୍ଗ ଭେଦେ ଯଥା, (୨)
ସାମାନ୍ୟ ବିପଦେ ଗୃହବିଗ୍ରହ ବିସ୍ମରି (୩)
ଯୁଝନ୍ତି ତେସନ ଆର୍ଯ୍ୟ ବୈଦେଶିକ ସହ,
ଆର୍ଯ୍ୟର ଏ ଚିରନ୍ତନ ବିସ୍ମରି କି ସତେ
ବାଲୁକାକୁରର ଧର୍ମ ଭଜି କର୍ମଦୋଷେ (୪)
ଏହିରୂପେ ଆର୍ଯ୍ୟ, ଆହା ଯିବେ ରସାତଳେ

---

(୧) ପାଣ୍ଡବମାନେ କୌରବମାନଙ୍କ ଦୁରଭିସନ୍ଧିରେ ବନବାସର ଘୋର କଷ୍ଟ ଭୋଗ କରୁଥିଲେ । ଦୁରନ୍ତ କୌରବମାନେ ନିଜର ସୌଭାଗ୍ୟ ଦେଖାଇ ପାଣ୍ଡବମାନଙ୍କୁ ଅଧିକତର ମନପୀଡ଼ା ଦେବା ସକାଶେ ଦ୍ୱୈତ ବନକୁ ଆସିଲେ । ଏମନ୍ତ ସମୟରେ ଗନ୍ଧର୍ବମାନଙ୍କର ହଠାତ୍ ଯୁଦ୍ଧହେବାରୁ କୁରୁରାଜା ଦୁର୍ଯ୍ୟୋଧନ ସେମାନଙ୍କ ହସ୍ତରେ ବନ୍ଦୀ ହେଲେ । ଯୁଧିଷ୍ଠିରଙ୍କ ଶ୍ରୀମୁଖରେ ଏହି ବାର୍ତ୍ତା ପହଞ୍ଚିବାରୁ ସେ ଦୁର୍ଯ୍ୟୋଧନଙ୍କୁ ଗନ୍ଧର୍ବମାନଙ୍କ ହସ୍ତରୁ ମୁକ୍ତ କରିବା ସକାଶେ ଅର୍ଜ୍ଜୁନଙ୍କୁ ଆଦେଶ ଦେଲେ । ଭୀମ ପ୍ରଭୃତି ଯୁଧିଷ୍ଠିରଙ୍କ ଏହି କାର୍ଯ୍ୟରେ ଆଶ୍ଚର୍ଯ୍ୟାନ୍ୱିତ ହୋଇ ପ୍ରତିବାଦ କରିବାରୁ ଯୁଧିଷ୍ଠିର କହିଲେ, "ଆପଣା' ମଧ୍ୟରେ କଳିହ ହେଲେ ଆମ୍ଭେମାନେ ପାଞ୍ଚଭାଇ ଏବଂ କୌରବମାନେ ଏକଶତ ଭାଇ, ମାତ୍ର ବୈଦେଶିକ ସହିତ କଳହ ହେଲେ ଆମ୍ଭେମାନେ ଏକଶତ ପାଞ୍ଚଭାଇ ।" ଅପରିଣାମଦର୍ଶୀ ଆର୍ଯ୍ୟମାନେ ଏହି ମହା କାବ୍ୟର ମର୍ମ ବୁଝି ନ ଚଳିବାରୁ ଭାରତବର୍ଷର ସର୍ବନାଶ ହେଲା । (୨) "ମହିଷଶିଙ୍ଗ ଫଟା, ଯୁଝିଲ ବେଳକୁ ଗୋଟା ।" ଏ ପ୍ରବଚନ ଓଡ଼ିଶାର ସର୍ବତ୍ର ପ୍ରଚଳିତ । ସହିତ—ଅଭିନ୍ନ । (୩) ସାମାନ୍ୟ ବିପଦ ସାଧାରଣ ବିପଦ, ଗୃହବିଗ୍ରହ ଆପଣା ମଧ୍ୟରେ କଳହ । (୪) ବାଲୁକାରକୁରର ଧର୍ମ—ସହିତର ସମ୍ପୂର୍ଣ୍ଣ ଅଭାବ ।

Digitized by PPRACHIN, SOA

# ସପ୍ତମ ସର୍ଗ

ଅଗ୍ନି-ସଙ୍ଗେ ସହ୍ୟଶୈଳେ ନକାଞ୍ଚନେ ବସି
କହନ୍ତେ ଏସନ ରାଜା, ଫିଟିଲା ସହସା
ଇନ୍ଦ୍ରଧନୁତୋରା-ବଲ୍ଲୀ-ତୋରଣ ଅଗ୍ରତେ
'ବଜ୍ରନାଦେ, ସିଂହନାଦେ କମ୍ପଇ ମେଦିନୀ
ବାହାରିଲେ ଦଳେ ଦଳେ ସେ ତୋରଣମୁଖୁ
ଅସଂଖ୍ୟପଦାତି, ସାଦୀ, ଆଧୋରଣ, ରଥୀ, (୧)
ଭାଗୀରଥୀ ଭର୍ଗଜଟାମଣ୍ଡଳୁ ଯେସନେ (୨)
ଜଳେ କନକବର୍ମେ ଚର୍ମେ; ବରାୟୁଧେ (୩)
ଧ୍ୱଜଦଣ୍ଡେ ପ୍ରଭାପୁଞ୍ଜ, ଜିଣି ସୌଦାମିନୀ
ଖେଳେ ନାନାବର୍ଣ୍ଣେ ରଙ୍ଗେ କେତନ-ଅଂଶୁକେ
ମହାରଣ୍ୟପ୍ରବାହିଣୀ-ମହାନଦୀ-ସ୍ରୋତେ
କେଳିମଦେ ମତ୍ତ କରିକୁଳକରୋଚ୍ଛ୍ୱାସେ
ଉଡ୍ଡୀନରଜତୋଜ୍ଜ୍ୱଳ-ଜଳକଣାଜାଲେ (୪)
ମଧ୍ୟାହ୍ନେ ଯେସନ ଖେଳେ କୋଟି ଇନ୍ଦ୍ରଧନୁ;
ସବା ପଛେ ବଜେ ବେନ ଅଶ୍ୱବାର ବୀରେ
ଭାସ୍ୱରକୃପାଣପାଣି, ହେମବର୍ମଧାରୀ,
ଅବାଧପ୍ରମାଥୀ ପୃଥୁ ବଲ୍ଲୀ-ଅଧିପତି,
ଅମର୍ଷୀ ଅମିତତେଜାଃ ପର-ପୁରଞ୍ଜୟୀ;
ତାଙ୍କ ପଛେ ଅଶ୍ୱାରୂଢ଼ା ସଂଯୁକ୍ତା ରୂପସୀ,
ମୁକ୍ତକେଶା, ମୁକ୍ତହାରା, ମଣିକଣ୍ଠିନୀ,

---

(୧) ଆଧୋରଣ—ଗଜାରୋହୀ । ଭର୍ଗମହାଦେବ । (୨) ବରାୟୁଧେ—ଉତ୍କୃଷ୍ଟ ଅସ୍ତ୍ରରେ । (୩) କେଳିମତ୍ତ ବନହସ୍ତୀମାନଙ୍କର ଶୁଣ୍ଡ ଫୁତ୍କାରରେ । (୪) ରୌପ୍ୟବର୍ଣ୍ଣ ଶୁଭ୍ର ଜଳଶୀକରର ଆସ୍ତରଣରେ ।

Digitized by PPRACHIN, SOA

ମନୋହର, ଆହା, ଯେଣ୍ଟେ ଶାରଦୀୟ ଉଷା
ମନ୍ଦାରଭୂଷଣା କାବ୍ୟତାର୍କୁନ୍ତଳିନୀ
ପୁନର୍ବସୁ ପୃଷ୍ଠେ ଉଦେ ପ୍ରାଚୀନଭଃପଟେ (୧)
ଢଳ ଢଳ ଦଶେ କାନ୍ତ, ଉନ୍ମୀଳିତ ଯଥା
ଡୁଳକାରେ ଟନ, ଅବା, ସଜ ସରସିଜ
ସରସୀ-ନିର୍ମଳ-ନୀରେ ବାଳରବି-କଲେ,
କିଅବା ସେ ଅଙ୍ଗଠାଣି, ଗଢ଼ିଛୁ ବିଧାଣି
ହତେ କି କଷ୍ଟ ରଦେ କୁନ୍ଦେ ତା ବସାଇ !
କି ମଧୁରେ ଖେଳେ ମନ୍ଦହାସର ଚନ୍ଦ୍ରିମା
ବାଂଧୁଜିବନର ଚାରୁ-ବନ୍ଧୁଲୀ-ଅଧରେ !
କେତେରଙ୍ଗେ ଲୀଳା ନୃତ୍ୟକରେ କେତେ ମତେ
ଶ୍ରୀମୁଖ-ପଙ୍କଜ-ରଙ୍ଗେ-ଭ୍ରୁଲତା-ନର୍ତ୍ତକୀ ! (୨)
କମଳ-ପାଟଳ-ଆଭା ଖେଳେ କ୍ଷଣେ କ୍ଷଣେ
ଅଯତ୍ନମଣ୍ଡନ ଗଣ୍ଡଯୁଗେ, ଗଳଦେଶେ, (୩)
ମୋହିନୀର ଶ୍ରୁତିମୂଳେ ଅବତଂସ ବେନି
ସ୍ୱାତୀ ଚିତ୍ରା ତାର କି ସେ ମୁଖଚନ୍ଦ୍ରପ୍ରାନ୍ତେ ? (୪)
ନୀଳୋତ୍ପଳ-ନେତ୍ର ଯୁଗ୍ମ ଆକର୍ଣ୍ଣବିସ୍ତାରୀ
ମାର-ଅସ୍ତ୍ରାଗାରରୂପେ ଭ୍ରୂ-ଖିଲାଣ ତଳେ
ବିରାଜେ, ମନୋଜ ଯହିଁ ଦ୍ୱିପ୍ରହର ଧନେ
ଧୃତସମ୍ପତ୍ତିକ ଖଣ୍ଡ ଲୁଣ୍ଠେ ଅକୁଣ୍ଠିତେ,

---

(୧) ଶରତ୍କାଳରେ ରାତି ଶେଷରେ ପୂର୍ବଦିଗରେ ଅତ୍ୟୁଜ୍ଜ୍ୱଳ ଯୁଗ୍ମତାରା ପୁନର୍ବସୁର ଉଦୟ ହୁଏ । ଏହା ତଳେ ପ୍ରଭାତ ତାରା ଏବଂ ପ୍ରଭାତ ତାରାତଳେ ଉଷାର ପାଟଳାଭ ଦୃଷ୍ଟ ହୁଏ । (୨) ମୁଖ ରଙ୍ଗଭୂମି, ଭ୍ରୂଲତା ସେହି ରଙ୍ଗ-ଭୂମିର ନର୍ତ୍ତକୀ । (୩) ପାଟଳାଭ ଗଣ୍ଡ ଏବଂ ଗଳଦେଶର ଅଯତ୍ନସିଦ୍ଧ ଅଳଙ୍କାର । (୪) ସ୍ୱାତୀ ଚିତ୍ରା ପରସ୍ପର ନିକଟବର୍ତ୍ତୀ ତାରା ।

Digitized by PPRACHIN, SOA

ଉଚ୍ଚ ପଞ୍ଚ କୁଟକଲି ଆବୃତ କଞ୍ଚୁକେ
ଗୃରୁ କ୍ଷୀଣକଟିବଦ୍ଧ ରତ୍ନସାରସନେ,
ଉଚ୍ଚ କ୍ଷୀଣ ଏକ ପୁଣି ଆରେକ ସକାଶେ, (୧)
କାନ୍ତକୁଳ ଦେବୀ ପ୍ରାୟେ ଶୋଭେ ସୀମନ୍ତିନୀ (୨)
ସେନାକୁଳ ସେ ପ୍ରାନ୍ତରେ, ଇନ୍ଦ୍ରକୁଳ ଯଥା (୩)
ଶୋଭେ, ଆହା ଉତ୍ତରଳ ସିନ୍ଧୁ ବୀଚିଦଳେ, (୪)
ପ୍ରତିହ୍ରଦେ ପ୍ରତିଫଳି, ସେ ଶୋଭା-ପିଚୁଳୀ
ଶୋଭିଲା ସେ ବୀଚିବକ୍ଷେ ଯଥା ବିଧୁଚ୍ଛବି,
ନୃପେ ଦେବ-ସେନାପତି ଦେବ ସେନାପତି (୫)
ପୃଥୁ ପୃଥୁଟପ୍ରାର୍ଥୀଙ୍କି ସେ ତୋରଣମୁଖେ
ଦୂରୁ ଦେଖି, ନିଜ ନିଜ ବାହିନୀ ସହିତେ
ନାନାଦେଶୀ ସେନାପତି ବନ୍ଦିଲେ ସାଦରେ
ବୀର-ବୀରାଙ୍ଗନା ପଦ ସର୍ବେ ଯଥାବିଧି,
ସମସ୍ତଙ୍କୁ ଦଳପତି ସସ୍ମିତେ ସମ୍ଭାଷି
ଆରମ୍ଭିଲେ ମହୋତ୍ସାହେ ରଣର ମନ୍ତ୍ରଣା,
ରଣପ୍ରିୟ, ମାତ୍ର ସେହି ଉତ୍ସାହର ଦୀପ୍ତି
ବିମ୍ବିତ ନ ଦେଖି ସେନାପତିଙ୍କ ବଦନେ,
କ୍ଷୁବ୍ଧ ହେଲେ ବୀରମଣି ବିସ୍ମୟ-ବିଷାଦେ,
ବୀର୍ଯ୍ୟପୁଷ୍ଟ ଆର୍ଯ୍ୟପଣ ଫିଙ୍ଗି ପୃଷ୍ଠଦେଶେ
ଆର୍ଯ୍ୟପୁରେ, ଖିନ୍ନମତି କଲି ଉତ୍ପୀଡ଼ନେ,

(୧) ସ୍ତନର ଉଚ୍ଚାବର୍ତ୍ତତଃ କଟି କୃଶ ଦିଶୁଅଛି, ପୁଣି କଟିର କୃଶତା-ବଶତଃ ସ୍ତନ ଉଚ୍ଚ ଦିଶୁଅଛି । (୨) କାନ୍ତକୁଳଦେବୀ ଶୋଭାର ଅଧିଷ୍ଠାତ୍ରୀ ଦେବତା । (୩) ସେନାକୁଳ—ସେନାପରମ୍ପରା । (୪) ସମୁଦ୍ର ଲହରୀ ସହିତ ସୈନ୍ୟମାନଙ୍କର ଏବଂ ଇନ୍ଦ୍ରକୁଳ ସହିତ ସଂଯୁକ୍ତାଙ୍କର ଉପମା । (୫) ଦେବ ସେନାପତି—କାର୍ତ୍ତିକେୟ ।

Digitized by PPRACHIN, SOA

ଭୀରୁଚିତ ବର୍ତ୍ମେ ଶଙ୍କି ରଣ-ବିଭୀଷିକା (୧)
ସର୍ବେ କଲେ ଅଳି ଧର୍ମ୍ମପୁତ୍ରଙ୍କ ସମ୍ମୁଖରେ
ପରିହାର ଯାଚିବାକୁ ପରପନ୍ଥୀ-ପଦେ (୨)
ମାନବ୍ୟୟେ, ଧିକ୍କାରିତ ପ୍ରାଣର ଭିକାରୀ
ପ୍ରାଣରଙ୍କ, ଭୟାତୁର, ଅଦୂରଦର୍ଶୀ,
ହୀନଚେତାଙ୍କର ଏହି ହୀନମତି ଦେଖି,
ଏ ହୀନ ମନ୍ତ୍ରଣା ଶୁଣି, ରୋଷେ ଆର୍ଯ୍ୟମଣି
ଅମର୍ଷୀ ସମ୍ବୋଧି, ତାଙ୍କୁ, ସମ୍ବୋଧି ବାହିନୀ
କହିଲେ ଏସନ ବୀର ବୀରୋଚିତ ଗିରେ—
"ଏହି କି ସେ ଆର୍ଯ୍ୟଭୂମି ? ଏ ଭୂମିର ସୁତ
ତୁମ୍ଭେ କି ଆର୍ଯ୍ୟନାମଦାୟାଦ ଜଗତେ ? (୩)
ବିନାଯୁଦ୍ଧେ ନ ଦେବାର ସୂଚ୍ୟଗ୍ରମେଦିନୀ (୪)
ପଣ ଯେଉଁ ଆର୍ଯ୍ୟଙ୍କର, ତାଙ୍କର ଶୋଣିତ
ବହେ କି ଆହେ ଯୋଧେ, ତୁମ୍ଭ ଧମନୀରେ
ଧିକ ! ଧିକ ! ଶତଧିକ ! ଧିକ ଏ ମନ୍ତ୍ରଣା !
ଏ ହୀନ ମନ୍ତ୍ରଣା ଭୀରୁ-ପାମର ଉଚିତ,
ଉଚ୍ଚାରି ଯା କଲ ଶୂଦ୍ରର ଅପବିତ୍ର ଆଜ
ନିଜ ମୁଖ, ଶ୍ରୋତା କର୍ଣ୍ଣ, ଆର୍ଯ୍ୟ ବଂଶଧରେ !
ଅବା ଅଭାଜନ ତୁମ୍ଭେ ଏ ନାମ ଧାରଣେ ?
ଭୀରୁତା ଯେ ହେତୁ ସିନା ବୀରର ମରଣ, (୫)
ଭୀରୁଭାବ ବହି ତୁମ୍ଭେ ମୃତ ଏ ଜଗତେ,
ଲୋଡ଼ଇ କି କେହି ଏବେ ମୃତର ମନ୍ତ୍ରଣା ?

---

(୧) ଭୀରୁଚିତ – ଭୀରୁଜନୋଚିତ । (୨) ପରପନ୍ଥୀ—ଶତ୍ରୁ । (୩) ଆର୍ଯ୍ୟପଦର ଉତ୍ତରାଧିକାରୀ । (୪) ଦୁର୍ଯ୍ୟୋଧନର ପ୍ରତିଜ୍ଞାପଣ । (୫) ଭୀରୁତା ହିଁ ବୀରମାନଙ୍କର ମୃତ୍ୟୁ ।

Digitized by PPRACHIN, SOA

ପଳାଇ, ଏ ରଣସ୍ଥଳୁ ରହିବ କି ଜିଇ
ଚିରଦିନ ଭବେ ? ହେବେ ନାହିଁ ସେ ଦୁରାଶା
ନିଜ ମୁଖ, ପିତୃନାମ, ବୃଥା କଳଙ୍କିତ
କରିବ ଏ ରୂପେ କିପାଁ ପ୍ରାଣରଙ୍କ ମୂଢ଼େ ?
ହା ଧିକ ! ଏ ରଙ୍କପ୍ରାଣ ଆତଙ୍କେ ବଞ୍ଚାଇ
ଅଶୁ ମୃତ୍ୟୁ ପ୍ରଦ ରଣୁ ଅରପି ଯବନେ
ନିଜର ଏ ସ୍ୱର୍ଣ୍ଣପ୍ରସୂ ଭୂମି ସନାତନୀ, (୧)
ଯାପିବ କି ଦିନ ଚିର-ଅନଶନବ୍ରତେ ?
କଳ୍ପଲତା-ମୂଳେ ବସି ଚିର ଉପବାସୀ ।
ତୃଷାର୍ତ୍ତ ନିରତେ ରହି ସୁରଧୁନୀତୀରେ !
ଦିଗ୍‌ବିଜୟୀ ଆର୍ଯ୍ୟସିଂହ ଔରସେ ଜନମି
ହେଲ କି ଅକ୍ଷମ, ଆହା ନିଜସ୍ୱ ରକ୍ଷଣେ ?
ହିମ-ଊର୍ଜ୍ଜସ୍ୱଳ ଭୀମ ହିମାଦ୍ରି-ପ୍ରାଚୀରେ
ଦୁର୍ଗମ ଭାରତଦୁର୍ଗ କାପୁରୁଷ-ହାତେ
କେ କହିବ ମ୍ଲେଚ୍ଛେ କିମ୍ବା ଅର୍ପିଲେ ବିଧାତା
ହା ଦୈବ ! ଜମ୍ବୁକ ପଶି ହର୍ଯ୍ୟକ୍ଷ-ଗୁହାରେ
ଗୋଇଠା ପ୍ରହାରି, ନେବ ତା ମୁଖୁଁ ଓଟାରି
ଗ୍ରାସ ତାର, ହର୍ଯ୍ୟକ୍ଷ ତା ସହିବ ମଉନେ !
ଏ ଲାଞ୍ଛନା ଥିଲା କି ଆର୍ଯ୍ୟର ଲଲାଟେ ।
ଆତଙ୍କେ ସେ ହର୍ଯ୍ୟକ୍ଷର ଭୈରବଗର୍ଜ୍ଜନେ
ପଶିଥିଲା ଏ ଜମ୍ବୁକ ନିଜ ବିଳେ ଯାଇ, (୨)
ସେହି ଦିଲ୍ଲୀପତି ପୃଥୁ ଭୂମ୍ବର ଅଗ୍ରଣୀ
ଏ ସଂଗ୍ରାମେ, ହେବ ଶତ୍ରୁ ଶୋଣିତ ପିପାସୁ

---

(୧) ସନାତନୀ – ଚିରକାଳର । (୨) ପ୍ରଥମ ଥର ପୃଥୁ ଯବନରାଜଙ୍କୁ ଭାରତବର୍ଷରୁ ତଡ଼ିଦେଇଥିଲେ ।

Digitized by PPRACHIN, SOA

କୃପାଣ ତାଙ୍କର ପୁଣି ନିଷ୍କୋଷିତ ଅଜ,
ସେହି ଧ୍ୱଜପଟ ପୁଣି ଉଡ଼ଇ ସମୀରେ,
ତରଳ କି ଯୁଝିବାକୁ ଯବନ ସଙ୍ଗତେ
ଯବନ-କାନନ ମହାଦାବାନଳରୂପୀ
ଅତ୍ୟନ୍ତପ୍ରମାଥୀ ପୃଥୁ-ବାହୁଚ୍ଛାୟା-ତଳେ ?
ଏତେ ମାୟା ପ୍ରାଣେ ଯେବେ, ତେଜି ରଣଭୂମି
ଶୃଗାଳସ୍ୱରୂପ ତୁମ୍ଭେ ରଙ୍କ ପ୍ରାଣ ନେଇ,
ବାନ୍ଧିରଖ ଗୃହେ ଯାଇ ନାରୀ-ବସ୍ତ୍ରାଞ୍ଚଳେ,
ହେ ନାରୀଏ, ଘୃଣାସ୍ପଦ ନରଦେହଧାରୀ (୧)
ବାହୁଡ଼ ସ୍ୱଗୃହେ ବେଗେ କଳଙ୍କିତ ମୁଖେ,
ଲାଙ୍ଗୁଳ ସଙ୍କୋଚ ଶ୍ୱାନ ପଳାଏ ଯେସନେ,
ଅଁଠା-ଗୋଇଠା-ଭୋଗୀ ସେହି ଶ୍ୱାନପରି
ପ୍ରସାଦାର୍ଥୀ ହୁଅ ଯାଇ ଯବନ ଦୁଆରେ !
ବାହୁଡ଼ ସ୍ୱଗୃହେ ବେଗେ ଖଡ୍‌ଗ ଶୂଳ ଆଦି
ଭୂଷଣ ନ ହୋଇ ଯାହା ମହାଭର ଏବେ (୨)
ତୁମ୍ଭ ଯାରୁ ହାତେ କରି ଫାଲେ ପରିଣତ,
ଯବନର ଭୋଗଲାଗି ଦକ୍ଷ ନିରୁଦ୍‌ବେଗେ
ଯବନର ଛତ୍ରତଳେ ପୈତୃକ ଅବନୀ,
ଫିଙ୍ଗିଦିଅ ଏହି ଢାଲ କି ଲୋଡ଼ା ଏ ଢାଲେ,
ତୁମ୍ଭଯୋଗ୍ୟ ଢାଲ ସିନା ଚକ୍ରାର, ଲୋତକ !
ସେହି ଢାଲେ ଆତ୍ମରକ୍ଷା ଆଚରିବ ଏବେ,
ବନାନ୍ତର କ୍ଷେତ୍ର ନୁହେଁ ସଂଗ୍ରାମ ଅଗଣା,

---

(୧) ହେ ନାରୀଏ—ଅବଜ୍ଞାବ୍ୟଞ୍ଜକ ସମ୍ବୋଧନ । ଘୃଣାସ୍ପଦରେ ନରଦେହଧାରୀ, ମାତ୍ର ବସ୍ତୁତଃ ନାରୀ । (୨) ଅସ୍ତ୍ର ବୀରମାନଙ୍କ ଭୂଷଣ, ମାତ୍ର କାପୁରୁଷଙ୍କ ପକ୍ଷରେ ଭାର ଅଟେ ।

Digitized by PPRACHIN, SOA

ତପସ୍ୟାର କ୍ଷେତ୍ର ହୁଏ, ତପସ୍ୱୀ-କାଙ୍‌କ୍ଷିତ,
ବିପଦର ମଙ୍ଗବେଦୀ, ଜୀବନ ଆହୁତି
ଦିଅନ୍ତି ଅାହ୍ଲାଦେ ଯହିଁ ଯଶୋଲିପ୍ସୁ ବୀରେ,
ତୁମ୍ଭପରି ଶ୍ୟାମିକାର ଲେଖା ଏ କଷପେ (୧)
ପଡ଼ିବାର ଲେଖି ନାହିଁ ବିଧି କେଉଁକାଳେ
କି ସାହସେ କଲ ତୁମ୍ଭେ ଅପବିତ୍ର ଅସି
ଏ ତୀର୍ଥ ଆର୍ଯ୍ୟର ଏହି ଧର୍ମଯୁଦ୍ଧସ୍ଥଳୀ ? (୨)
ଅର୍ଯ୍ୟନାମେ ଏ କାଳିମା ବୋଳିଲ କପାଇଁ ?
ଆସ ହେ ସଂଗ୍ରାମସିଂହ ଅକାମିଳ ବୀରେ !
ଏ ମହାକଳଙ୍କ ଯାଇ ପଖାଳିବା ଖରେ
ରଣକ୍ଷେତ୍ରେ ଶତ୍ରୁଲୋହେ ଅବା ନିଜ ଲୋହେ,
ବଞ୍ଚିତ ତୁମ୍ଭର ଶୂଳ ଶତ୍ରୁରକ୍ତ-ସ୍ୱାଦୁଁ
ବହୁଦିନୁ ଦିଅ ତାଙ୍କୁ ଶୋଣିତ-ପାରଣା,
ଶତ୍ରୁ ଦେହେ ତାଙ୍କ ମନ ପୁଣି ନିଅ ଶାଣି,
ଆସ ବେଗେ, ରଣସ୍ଥଳୁଁ ହିଙ୍କି ମହୋଲ୍ଲାସେ
ଅଣିବା ବିଜୟ-ଲକ୍ଷ୍ମୀ, ନ ପାରିଲେ ତାହା
ବୀରଶେଯେ ଆଶ୍ରିବା ତ ନିଜ ହାତ କଥା, (୩)
ଆର୍ଯ୍ୟର ଦୁର୍ଭାଗ୍ୟଫଳେ ଅସିବ ଏ ଦେଶେ,
ଯେବେ କି ଯବନ, ଆସୁ ଅସୁ ଶବ ମାତ୍ର । (୪)

---

(୧) ଶ୍ୟାମିକା—ଭଲ ସୁନା, ରଣକ୍ଷେତ୍ରରୂପ କଷପରେ କାପୁରୁଷରୂପୀ କୃତ୍ରିମ ସୁବର୍ଣ୍ଣର ରେଖା ପଡ଼େନାହିଁ । (୨) ଧର୍ମଯୁଦ୍ଧ ସ୍ୱଦେଶରକ୍ଷାର୍ଥ ଯୁଦ୍ଧ । ପରରାଷ୍ଟ୍ର ଗ୍ରାସ ସକାଶେ ଯୁଦ୍ଧ ପାପଯୁଦ୍ଧ । (୩) ଯୁଦ୍ଧରେ ପ୍ରାଣବିସର୍ଜନ ନିଜର ଆୟତ୍ତ । ବୀରର ସୌଭାଗ୍ୟରୁ ବଞ୍ଚିତ ହେଲେ ସୁଦ୍ଧା ବୀରର ମୃତ୍ୟୁରୁ ଅମ୍ଭେ ବଞ୍ଚିତ ହେବୁ ନାହିଁ । (୪) ଅମ୍ଭେମାନେ ଜୀବିତ ଥାଉଁ ଥାଉଁ ଯବନ କଦାପି ଆସିପାରିବ ନାହିଁ ।

Digitized by PPRACHIN, SOA

‘ମନ୍ତ୍ରର ସାଧନା ଅବା ଶରୀର-ପତନ’
ଆର୍ଯ୍ୟର ଯା ସାର ଧର୍ମ ପାଳ ଅକ୍ଷରେ !
ଆର୍ଯ୍ୟକୁଳଧ୍ୱଜ, ପୃଥ୍ୱୀରାଜଙ୍କ ସନ୍ଦେଶ ।”
ସୂର୍ଯ୍ୟତେଜ ସ୍ପର୍ଶେ ଯେହ୍ନେ ସୂର୍ଯ୍ୟକାନ୍ତମଣି
ଉଗାରେ ଅନଳ-କଣା, ଅମର୍ଷୀର ବାଣୀ
ଜାଳଦେଲା ତେଜ-ବହ୍ନି ପ୍ରତ୍ୟେକ-ହୃଦୟେ
ଯୋଧଙ୍କର, ସର୍ବେ ଦମ୍ଭେ ଗର୍ଜିଲେ ହୁଙ୍କାରେ
‘ଜୟ ପୃଥୁରାଜ’ - ରବେ କମ୍ପିଲା ମେଦିନୀ,
ହେଷିଲେ ତୁରଙ୍ଗେ, ଗଜେ ଗର୍ଜିଲେ ଭୈରବେ,
ଉଠିଲା ଅମ୍ବର ଜଳି ଅସ୍ତ୍ରର ଝମକେ
ଦାବାନଳେ ବନ ଯଥା, ବୀରବାଦ୍ୟରୋଳେ
ଚକ୍ରବାଳେ ପ୍ରତିଧ୍ୱନି ଜାଗିଲେ ଚମକି;
ଫଳୁ ଯା ଫଳବ କର୍ମେ, ରହ ଧର୍ମ ଧରି,
ବ୍ୟଗ୍ର ହେଲେ ଅଗ୍ରସର ହେବାକୁ ସଂଗ୍ରାମେ
ଉଦାୟୁଧ ଯୋଧବୃନ୍ଦ, ସର୍ବେ ଏକମେଳେ (୧)
ବରିଲେ ଅମର୍ଷୀ ବୀରେ ସେନାପତି ପଦେ,
ମହାଦରେ ପୃଥ୍ୱୀ ତାହୁଁ ବାନ୍ଧଦେଲେ ଶାଢ଼ୀ
ତାଙ୍କ ଶିରେ ଦେଲେ ଅଶ୍ୱପୃଷ୍ଠୁଁ ଅବତରି,
ବନ୍ଦାଣ-ରତନ-ଥାଳୀ ପଦ୍ମହସ୍ତେ ଘେନି
ସମ୍ଭାଷିଲେ ଦିଲ୍ଲୀରାଣୀ ନୀରାଜନାବଧି,
ଦୈତ୍ୟଯୁଦ୍ଧେ ଶଚୀ ଯଥା ଦେବସେନାନାଥେ, (୨)
ପୃଥ୍ୱୀଙ୍କୁ ମେଲାଣି ଦେଇ ବାହୁଡ଼ିଲେ ରାଣୀ
ଅଶ୍ରୁପୂର୍ଣ୍ଣମୁଖେ ପୂର୍ଣ୍ଣ-କଳାକରମୁଖୀ;
‘ଜୟ ପୃଥ୍ୱୀ’-ନାଦେ ଏଣେ କମ୍ପାଇ ମେଦିନୀ

---

(୧) ଉଦାୟୁଧ—ଯେଉଁମାନେ ଅସ୍ତ୍ର ଉତ୍ତୋଳନ କରିଅଛନ୍ତି । (୨) ଦେବସେନାନାଥ—କାର୍ତ୍ତିକେୟ ।

Digitized by PPRACHIN, SOA

ରଣକ୍ଷେତ୍ରଯାତ୍ରୀ ହୋଇ ଚଳିଲ ବାହିନୀ,
ଦଳେ ଦଳେ ରଣୋନ୍ମାଦେ, ରଣବାଦ୍ୟତାଳେ
ତାରକାଭୂଷିତ ଚଳେ ବ୍ୟୋମ-ତୁଳା ଭଜ; (୧)
ପ୍ରାସାଦେ, ପ୍ରାଚୀରେ, ପୁଣି ଗବାକ୍ଷେ, କୁଟ୍ଟିମେ
ନିରେଖିଲେ ବୃନ୍ଦ ହୋଇ ଦିଲ୍ଲୀପୁରନାରୀ
ଆର୍ଯ୍ୟର ସେ ରଣଯାତ୍ରା କରପଦ୍ମ ଯୋଡ଼ି
ବିଜୟବାହୁଡ଼ା ଯାଚି ରଣଲକ୍ଷ୍ମୀପଦେ,
ବରଷିଲେ ଲାଜାଞ୍ଜଳି କାହିଁ ବରାଙ୍ଗନା,
କାହିଁ ରଣଯାତ୍ରୀ ପୁତ୍ରେ ବିଧୁରା ଜନନୀ
ଦୂରୁଁ ଦେଖି, ମୁହୁର୍ମୁହୁଃ ମୁଣ୍ଡେ କର ହାଣି
କାନ୍ଦିଲ କରୁଣେ ଦୋଷ ଦାରୁଣ ବିଧିକି,
ଅତ୍ତ୍ରନନ୍ଦନେ କାହିଁ ଉଭା ପ୍ରଣୟିନୀ
ବ୍ୟାବର୍ତ୍ତିତ ପ୍ରିୟମୁଖ ଦେଖିବାର ଆଶେ
ଥରେ ହେଲେ ଆମରଣସ୍ମୃତିର ଶଙ୍କାଳି; (୨)
କାହିଁ ପ୍ରେମଶୀଳା ନବବିବାହିତା ବାଳା
ପକାଏ ରମଣପଦେ ବେଡ଼ିରୂପେ କି ସେ
ନୀଳୋତ୍ପଳଦଳଦାମ-ରୁଚି ବେନି ଅଖି ?
ଅଙ୍ଗୁଳି-ନିର୍ଦ୍ଦେଶେ ବାଷ୍ପଗଦ୍‌ଗଦଭାଷେ
କୋଡ଼ସ୍ଥ ଶିଶୁକୁ କାହିଁ ଦିଅଇ ଚିହ୍ନାଇ

---

(୧) ସଶସ୍ତ୍ର ସୈନ୍ୟମାନଙ୍କ ଗତି ଦେଖି ବୋଧ ହେଲା, ଯେମନ୍ତେ କି ନକ୍ଷତ୍ରମଣ୍ଡିତ ନଭୋମଣ୍ଡଳ ଚଳିଯାଉଅଛି । (୨) ଯୁଦ୍ଧଯାତ୍ରୀ ପ୍ରଣୟୀ ମୁଖ ଫେରାଇ ଥରେ ଅନାଇଲେ ସେହି ଚାହାଣି ମରଣ ପର୍ଯ୍ୟନ୍ତ ସ୍ମୃତିର ସମ୍ପତ୍ତି ହୋଇ ରହିବ, ଏହି ଆଶାରେ ପ୍ରଣୟିନୀ ଉତ୍ସୁକ ନୟନରେ ଉର୍ଦ୍ଧ୍ୱ ହୋଇ ରହିଅଛି ।

Digitized by PPRACHIN, SOA

ରଣଯାଜୀ ଥିଲୁ ତାର ସେ ଶିଶୁର ମାତା
ଲୋଚନେ ଲୋଚନ ଜଳ ମୂର୍ତ୍ତି ସୁଲୋଚନା, (୧)
ଶୋକୋଚ୍ଛ୍ୱାସେ କାହିଁ ପୁଣି ଦେଖଇ କୁମାରୀ
ମାନସପତିର ଗୂରୁମୂରତ ସହତେ (୨)
ସୁନ୍ଦର ଆକାଶ-ହର୍ମ୍ୟ, ଆଶା-ବିରଚିତ, (୩)
ମିଶି ଯାଇଅଛୁ ତାର ଆଶା ଚକ୍ରବାଳେ (୪)
ଭଉଜ ଅନାଇ କାହିଁ କାନ୍ଦଇ ଭଉଣୀ,
ପିତାକୁ ଅନାଇ କାହିଁ କାନ୍ଦଇ ଦୁହିତା
ଶ୍ୱାସ ସଙ୍ଗେ ତେଜି ପୁଣି ଦର୍ଶନର ଆଶା,
ଲକ୍ଷ୍ମୀପୁଷ୍ପ-ଶିରେ ଦେବେ ପୂରିଲ ଏରୂପେ
ଅର୍ଚ୍ଚନା-ବିଳାପେ ବଳ, ବ୍ରତର ମନାସେ ।
ଘନସନ୍ନିବେଶେ ହେତ୍ରା-ହନ୍ଦ-ଶବ୍ଦରେ
ଅଗ୍ରେ ଉଭା ଯବନର ବ୍ୟୂହିତ ବାହିନୀ, (୫)
ମହାଦୃପ୍ତ, ଉଚ୍ଛ୍ୱସିତ ସଯତ ସାହସେ, (୬)
ଦୃଢପ୍ରତଜ୍ଞାର ମୁଦ୍ରା ମୁଦ୍ରିତ ଲଲାଟେ,
ଅସି, ଶୂଳ, ଭଲ୍ଲ ଭନ୍ଦ ଝଳେ ଝକଝକେ
ସୌରକରେ ଠିକରଇ ଆଖି ଝରତେକେ,
ଭୀମଉଦ୍ଧଲବଣଂସୀ ଧୂମକେତୁ ପ୍ରାୟେ,
ବାଳେନ୍ଦୁଲାଞ୍ଛିତ ଧ୍ୱଜ ଉଡ଼ଇ ସମୀରେ (୭)

(୧) ଲୋତକ ବିସର୍ଜନ ଅଶୁଭସୂଚକ ଅଟେ; ଏହି ହେତୁରୁ ସେଥିରେ ସ୍ତମ୍ଭନ । (୨) ମାନସପତି—ମନେମନେ ଯାହାକୁ ପତିତ୍ୱରେ ବରଣ କରିଅଛି । (୩) ଆଶାବିରଚିତ— ଆଶାଗଠିତ ସୁନ୍ଦର ପ୍ରାସାଦ । (୪) ଆଶାଚକ୍ରବାଳେ —ଦିଗ୍‌ଚକ୍ରରେ । (୫) ବ୍ୟୂହିତ —ବ୍ୟୂହରେ ସଜ୍ଜିତା । (୬) ସଯତ ସାହସ —ଯେଉଁ ସାହସ ଉଚ୍ଛୃଙ୍ଖଳ ନୁହେଁ । (୭) ଯବନମାନଙ୍କର ଧ୍ୱଜ— ବାଳେନ୍ଦୁଲାଞ୍ଛିତ ।

Digitized by PPRACHIN, SOA

ଉର୍ଦ୍ଧ୍ୱ ଦେଶେ, ଧ୍ୱଜ ଧ୍ୱଜ ସେ ଧ୍ୱଜ ଯନ୍ତୁତେ
ଦେଶଦ୍ରୋହୀ କଳଙ୍କର ବାନାରୂପେ ପୂର୍ଣ୍ଣ
ତୋଳିଅଛୁ ନିଜ ଧ୍ୱଜ ରାଠୋର ପାଂଶୁଳ
ଜୟଚନ୍ଦ୍ର ଯବନର ପ୍ରସାଦାଭିକାଂକ୍ଷୀ (୧)
ନିଜପାଇଁ, ମାତୃଭୂମି ଆର୍ଯ୍ୟାବର୍ତ୍ତ ପାଇଁ
ବ୍ରତ ଯାର ଅଧୀନତା-ଶୃଙ୍ଖଳ ସର୍ଜନା
ସେ ପାପୀ ସିନ୍ଧୁତେ ବନ୍ଧ ପାପସନ୍ଧି-ପାଶେ,
ଆର୍ଯ୍ୟନାଶେ ଯବନର ଆର୍ଯ୍ୟଦ୍ରୋହକାଂକ୍ଷୀ
କାଶ୍ମୀର, ପୁଷ୍କଳାବତୀ, ତକ୍ଷଶିଳାପୁରୀ (୨)
ଶାଳାତୁର, ହଂସପୁର ଆଦି କରି ଯେତେ (୩)
ପଞ୍ଚସ୍ୱର୍ଗ ଭାରତର ତୋରଣକୁଞ୍ଚିକା—
ପଞ୍ଚନଦ-ଜନପଦ-ରାଜନ୍ୟମଣ୍ଡଳୀ (୪)
ମିଶିଛନ୍ତି ତହିଁ ଆସି ନିଜ ଦଳବଳେ,
ସତ୍ୟଲଭ ମ୍ଲେଚ୍ଛ, ମାନି ଅନ୍ଧ ପରିଣାମେ ।
ଚତୁରଙ୍ଗ ହୋଇ ତହୁଁ ହିନ୍ଦୁ ଅନୀକିନୀ
ଛୁଟିଲେ ଭୈରବ-ରଙ୍ଗେ, ଯେସନ୍ତେ ଘଡ଼ଘଡ଼ି
ଯୁଗାନ୍ତର, ନଭଗର୍ଭ ବିଦାରି ସେ ଧ୍ୱନେ,
ଭ୍ରୂକୁଟି-କୁଟିଳ ମୁଖେ ଆରକ୍ତ ଲୋଚନେ
ନିରେଖିଲେ ହିନ୍ଦୁ ସେନା ହିନ୍ଦୁଙ୍କ ଶତ୍ରୁନ୍ତେ

---

(୧) କାନ୍ୟକୁବ୍ଜପତି—ରାଠୋର ବଂଶୀୟ ଜୟଚନ୍ଦ୍ର, ସଂଯୁକ୍ତାଙ୍କ ପିତା ଏବଂ ପୃଥ୍ୱୀଙ୍କ ଶ୍ୱଶୁର । (୨) ରାମାନୁଜ ଭରତଙ୍କ ପୁତ୍ର ତକ୍ଷ ଓ ପୁଷ୍କଳ କର୍ତ୍ତୃକ ତକ୍ଷଶିଳା ଓ ପୁଷ୍କଳ ନଗରୀ ସ୍ଥାପିତ ହୋଇଥିଲା । ଏମାନ ପଞ୍ଜାବର ଅନ୍ତର୍ଗତ ।
(୩) ଶାଳାତୁର—ବର୍ତ୍ତମାନ ଲାହୋର । ହଂସପୁର—ଆଧୁନିକ ମୂଲତାନ ।
(୪) ପଞ୍ଚନଦ ଜନପଦ ଅର୍ଥାତ୍ ପଞ୍ଜାବ ଭାରତବର୍ଷର ତୋରଣର କୁଞ୍ଚିସ୍ୱରୂପ ।

Digitized by PPRACHIN, SOA

ଲବେ ମାନ ବାତ୍ୟା ଆଗେ ବାତସ୍ତମ୍ଭ ଯଥା, (୧)
କ୍ଷେମ ସଣ୍ଟୁ ଦନ୍ତ-ଆବରଣ ତଳେ
ଆନ୍ଦୋଳିତ ମୁହୁର୍ମୁହୁଃ ବୀରବୃନ୍ଦମନଃ,
ରକ୍ତ ହୋଇଗଲା ଜଳ ପାଣ୍ଡୁ ଗଣ୍ଡସ୍ଥଳୀ,
ଥରିଲା ପାଦର ଭଣ୍ଡା ଥର ଥର ଥରେ
ଏକ ଆରେକରେ ଭେଟ, ସାହସ ବିସ୍ମୃତ
ଭଜିଲା ଆତଙ୍କ ମହାସାହସୀର ହିଆ
ବିକଟାଳ-କାଳ-ଆସ୍ୟ କୁହର ଅଗତେ, (୨)
ସଂଗ୍ରାମସଙ୍କେତଶଂସୀ ନାଦିଲା ଭୈରବେ
ଏ କାଳେ ସଂଗ୍ରାମ ଶିଙ୍ଗା, ଢକ୍କା, ତୂରୀ, ଭେରୀ
ଜଗଝମ୍ପ, ଝାଂଝର, ଦାମାମା ଦୁନ୍ଦୁଭି,
ପ୍ରତିଧ୍ୱନି ଉପୁଜାଇ କକୁଭ-କୁହରେ
ପୁନଃ, ପୁନଃ, ବିଶ୍ୱଧ୍ୱଂସୀ ରୁଦ୍ରଶିଙ୍ଗା ପରି, (୩)
ଆମୂଳ ବସୁଧା-ବନ୍ଧ କମ୍ପାଇ ସେ ତାନେ,
ସେ ଆରବେ ମହାଦମ୍ଭେ ମିଶିଲେ ଆହବେ
ଆର୍ଯ୍ୟ ଯବନର ସେନା ଗର୍ଜି ହୁହୁଙ୍କାର
ପ୍ରଳୟ-ଜୀମୂତ ଯେହ୍ନେ, ପୂର୍ଣ୍ଣ ଇରମ୍ମଦେ, (୪)
ପ୍ରଭଞ୍ଜନପୃଷ୍ଠେ ନଭେ ବେଗେ ଉଡ଼ି ଆସି
ବେଳାଆଡ଼ୁ ବେଳା ପରେ ପଡ଼ନ୍ତି ବେଳଏ,
ଆତଙ୍କେ କମ୍ପିଲା ବିଶ୍ୱ ସେ ଘୋର ନିର୍ଘୋଷେ
ଦୈତ୍ୟେଶ୍ୱର ବୃନ୍ଦ-ଶିରେ ତପଃହାରରୂପି (୫)

---

(୧) ମହାବାତ୍ୟାର ଅବ୍ୟବହିତ ପୂର୍ବେ ପବନ ଯେପରି ସ୍ତମ୍ଭିତ ହୋଇଯାଏ । (୨) ଯମର ଭୟଙ୍କର ମୁଖ-କୁହର ସମ୍ମୁଖରେ । (୩) ବିଶ୍ୱ-ପ୍ରଳୟକାରୀ ମହାଦେବଙ୍କ ଶିଙ୍ଗାପରି । (୪) ଇରମ୍ମଦ—ବଜ୍ରାଗ୍ନି । (୫) ତପସ୍ୟା ଅତି କଠିନ ପଦାର୍ଥ । ବଜ୍ର ଅତି କଠିନ ହୋଇଥିବାରୁ ତପସ୍ୟାର ହାରରୂପେ ବର୍ଣ୍ଣିତ ହୋଇଅଛି ।

Digitized by PPRACHIN, SOA

ଦମ୍ଭୋଳି କ୍ଷେପିଲେ ଅବା ଦମ୍ଭୋଳି ନିକ୍ଷେପ (୧)
କି ପୁରେ, କି ଜନପଦେ, ଭୂକମ୍ପନେ ଯଥା
ମଡ଼ ମଡ଼ ମଡ଼ ହୋଇ କମ୍ପିଲା ସଘନେ
ଭବନ, ପାଚେରି, ପୀଢ଼ା ଖରତର ସ୍ରୋତେ
ଗ୍ଳଲିଲା ଯମୁନାପାଣି ସୁରଧୂନୀମୁଖେ,
ପ୍ରଜାପତି କ୍ରତୁ ଧ୍ୱଂସେ ବୀର ଭଦ୍ରରୂପୀ
ବିଶ୍ୱନାଶୀ ରୌଦ୍ରୋଜ୍ଜ୍ୱଳ ପ୍ରଶ୍ୱାସ ପରୁଷେ (୨)
ବହିଲା ମରୁତ, ଦୂର ଦିଙ୍ମୁଖ ଘୋଡ଼ାଇ
ଧୂଳି-ମେଘେ, ମହାବେଗେ ଉପାଡ଼ି ଦ୍ରୁମାଳି
ଶାବକର ମାୟା ଛାଡ଼ି ଉଡ଼ିଗଲେ ନୀଡ଼
ବିହଙ୍ଗେ, ଗଗନ ପୂରି କରୁଣ କୂଜନେ,
ପଳାଇଲେ ଜୀବକୁଳ କିଏ କେଉଁ ଆଡ଼େ
ବଣାହୋଇ, ପଳାଇଲେ ଯୋଗୀ ଯୋଗ ଛାଡ଼ି
ଗର୍ଭିଣୀର ଗର୍ଭସ୍ରବ ପଡ଼ିଲା ଅକାଳେ;
ଚକିତ ଶିଶୁକୁ ଯତ୍ନେ ଧରିଲକ ଜାକି
ଆକଟେ ତା ମାତାକୋଡ଼େସ୍ତନ୍ୟଦାନେରତା, (୩)
ଛନକାରେ ତ୍ରସ୍ତ ହୋଇ ହେଲେ ଛନ୍ନମତି
ସର୍ବପ୍ରାଣୀ କି ଜଳେ, କି ସ୍ଥଳେ ବ୍ୟୋମସ୍ଥଳେ,
ଆବିଳା, ଫେନିଳା, ଗିରଗିରକେ ଅରୁଣା,
କଲୋଚ୍ଛ୍ୱାସେ ବନ୍ଦିଲାଙ୍କି ଉଡ଼ୁଆ ପ୍ରାନ୍ତରେ (୪)

---

(୧) ଦମ୍ଭୋଳି—ବଜ୍ର । ଦମ୍ଭୋଳିନିକ୍ଷେପୀ—ଇନ୍ଦ୍ର । (୨) ଦକ୍ଷଯଜ୍ଞ ଧ୍ୱଂସ ସମୟରେ ଶିବଦୂତ ବୀରଭଦ୍ର ଜ୍ୱରରୂପ ଧାରଣ କରିଥିଲେ । (୩) ଆକଟେ—ନିବିଡ଼ ରୂପେ । (୪) ଉଡ଼ୁଆ ପ୍ରାନ୍ତର ବାଙ୍କିରାଜ୍ୟ ଅନ୍ତର୍ଗତ ମହାନଦୀର ଦକ୍ଷିଣ ତୀରରେ ଅବସ୍ଥିତ । ମହାନଦୀର ପ୍ରବଳବନ୍ୟା ସମୟରେ ଏହା ଦ୍ୱିତୀୟ ଚିଲିକାରେ ପରିଣତ ହୁଏ ।

Digitized by PPRACHIN, SOA

ପଟଣେ ଘୋ ଘୋ ରବେ ଯଥା ନଦୀକୂଳେଶ୍ୱରୀ,
ମହାନଦୀ, ସେ ବିଶାଳ ସ୍ଥଳୀକି ଆବୋରି
ଜଳ ଆସ୍ତରଣେ ଦୂର ଶୈଳ-ଶ୍ରେଣୀ ଯାଏ
ବୁଡ଼ାଇ ଶ୍ୟାମଳ କ୍ଷେତ୍ର କୃଷୀବଳ ଆଶା
ଭସାଇ ଗୋଶାଳା, ଖଳା, ମଞ୍ଚ, ଧାନକୋଠୀ
ମହାବେଗେ ମହାଦ୍ରୁମ-ବିଟପ-ପଲ୍ଲବେ
ଝାଡ଼ୁଥିଲେ ଆଗେ ଯହିଁ ବିହଙ୍ଗଦମ୍ପତି
ପ୍ରେମାମୋଦେ ଢେଉ ରଙ୍ଗେ ଖେଳାଇ ମୀନାଳୀ (୧)
ସେହି ରୂପେ ଯବନ ବଳେ ଆର୍ଯ୍ୟବରୂଥିନୀ
ପଡ଼ିଲ ପ୍ରଚଣ୍ଡ ବେଗେ । ରଥୀ ମହାରଥୀ,
ପଦାତି ପଦାତି ସହ; ସାଦୀ ସଙ୍ଗେ ସାଦୀ,
ନିଷାଦୀ ନିଷାଦୀ ସହ ମିଶିଲେ ଆହବେ,
ରଣୋନ୍ମାଦ-ଉଦ୍ଦୀପକ-ରଣ ବାଦ୍ୟଗାନେ,
ଅସ୍ତ୍ରର ଝନଝନେ, ଧନୁଷ୍ଟଙ୍କାର-ଶବଦେ,
ଆହତର ଆର୍ତ୍ତନାଦେ, ଜେତାର ହୁଙ୍କାରେ,
ଚକ୍ରର ଘର୍ଘରେ, ବାଜିରାଜି-ହ୍ରେଷାରବେ,
ଦନ୍ତାବଳ-ଘଣ୍ଟାରବେ ଆବର ବୃଂହିତେ,
ଉଠିଲା ନିହ୍ରାଦ କର୍ଣ୍ଣବିବର ବିଦାରି,
ଅମ୍ବୁରାଶି-ଘୋଷ ଯଥା ପ୍ରଳୟ ପବନେ,
ବ୍ରହ୍ମାଣ୍ଡ-ଉଦର ଫାଟିଗଲା କି ସେ ନାଦେ !
ବାଣବୃଷ୍ଟି ଘୋଟିଗଲା ଶଲଭ ପରାଏ (୨)
ନଭୋଦେଶ, ଧୂଳିରାଶି ଅଶ୍ୱଖୁରେ ଉଠି

(୧) ବୃକ୍ଷମାନଙ୍କର ଶାଖାପଲ୍ଲବ ମଧ୍ୟରେ ପୂର୍ବେ ପକ୍ଷୀମାନେ କ୍ରୀଡ଼ା କରୁଥିଲେ, ବନ୍ୟାଜଳ ସେ ପର୍ଯ୍ୟନ୍ତ ଉଠିବାରୁ ସେଠାରେ ବର୍ତ୍ତମାନ ମତ୍ସ୍ୟମାନେ କ୍ରୀଡ଼ା କରୁଛନ୍ତି । (୨) ଶଲଭ—ଫଡ଼ିଙ୍ଗ, ଝିଣ୍ଟିକା ।

Digitized by PPRACHIN, SOA

ରଥଚକ୍ରେ ସାନ୍ଦ୍ର ହୋଇ, କର-କର୍ଣ୍ଣିତାଳେ
ପ୍ରହରି, ଅମ୍ବରବମ୍ବ ଘେରିଲା ଆକାଶେ,
ରଣ-ଉତ୍ସବର ଯୋଗ୍ୟ ଚନ୍ଦ୍ରାତପରୂପେ, (୧)
ବାଳାତପ ପ୍ରାୟେ ଶୋଭେ ସେ ଧୂଳି-ଅନ୍ଧାରେ
ରକ୍ତଧାର, କର୍ଦ୍ଦମାକ୍ତ କଲା ବସୁନ୍ଧରା,
ରଣଚଣ୍ଡୀଙ୍କର କି ସେ ଅଳକ୍ତକ-ଲାଗି ? (୨)
ଯୁଗାନ୍ତ-ମାର୍ତ୍ତଣ୍ଡ ପ୍ରାୟେ ଜଳିଲା ଅମ୍ବରେ
ଉତ୍କଳ ସାଦକ-ଚନ୍ଦ୍ର, ମୈଥିଳ-ନାଶବେ
ଅନ୍ଧାର ଦହିଲା ଦଶ, ଚପଳା-ଚମକେ
ଚମକି ଉଜଳି ଖଣ୍ଡା, ଟେକପାଲୀ କଟାରି,
କୌଣ୍ଡେଶ୍ୱର-ଭଦ୍ରପାଳ ବୈରାଟ-ପରଶୁ,
ପଡ଼ିଲା ଝନ୍‌ଝନେ ଝାଣେ ଶପୁବାରବାଣେ (୩)
ପ୍ରମତ୍ତ-ମାତଙ୍ଗ-ଦନ୍ତ ତୀବ୍ର ଅସ୍ତ୍ରାଘାତେ
ଅନଳସ୍ଫୁଲିଙ୍ଗ ବର୍ଷି ଲଭିଲା ତତ୍କ୍ଷଣେ
ଉଚ୍ଛ୍ୱାସେ ଉତ୍‌ଥିତ-ରକ୍ତ-ଶୀକର-ଆସାରେ, (୪)
ସମ୍ବର ଶାଣିତ ଶର ସୈନ୍ୟଙ୍କ ଗାତ୍ରେ
ପଶିଲା ଯେସନେ ସର୍ପ ଉରଗବଲ୍ମୀକେ (୫)
ଭ୍ରୂକୁଟିକୁଟିଳ ମୁଖେ ଅଧର କାମୋଡ଼ି
ଅଗ୍ରତ-ଅଗ୍ରତ-ସଙ୍ଗେ ଯୁଝିଲେ କଟକେ,
ଦାରୁଣ ସେ ବିମର୍ଦ୍ଦେ, ପ୍ରହାର ଦର୍ପେ (୬)

(୧) ରଣଧୂଳି ଅନ୍ଧାରରେ ବ୍ୟାପ୍ତହୋଇ ରଣୋତ୍ସବର ଉପଯୁକ୍ତ ଚନ୍ଦ୍ରାତପ ହେଲା । (୨) ରକ୍ତଧାର ଯୁଦ୍ଧର ଅଧିଷ୍ଠାତ୍ରୀ ଦେବୀଙ୍କର ଅଳକ୍ତକ ପ୍ରାୟ ହେଲା । (୩) ଝାଙ୍କଣେ—ଭୟଙ୍କରରୂପେ, । ଶପୁବାରବାଣେ—ଶତ୍ରୁମାନଙ୍କର ଧାରଗଠିତ କବଚ ଉପରେ । (୪) ଶୁଣ୍ଢରୁ ଫୁତ୍କାରଜନିତ ଶୀକର ବୃଷ୍ଟିରେ । (୫) ଉଇହୁଙ୍କା ମଧ୍ୟରେ ସାପ ପଶି । (୬) ବିମର୍ଦ୍ଦ—ଯୁଦ୍ଧ ।

Digitized by PPRACHIN, SOA

ଅଶନି, ପ୍ରହାର ତାର ଖାଇ ଅକାତରେ,
ରକ୍ତାକ୍ଷୁଁ ସଘନେ ଫିଙ୍ଗି ରୋଷାନଳକଣା,
ବିରଥ ହତାଶ୍ୱ ହୋଇ ରଥୀ ଅଶ୍ୱବାରେ
ଯୁଝିଲେ ପଦାତି ରୂପେ ଶସ୍ତ୍ରେ ଶସ୍ତ୍ର ହାଣି;
ଅସ୍ତ୍ର ଭାଙ୍ଗି ଲାଗୁ ଗାଢ଼େ ହୋଇ ଭିଡ଼ାଭିଡ଼ି
ମୁଷ୍ଟାମୁଷ୍ଟି ମୁଥାମୁଥି କଚ୍ଛକଚ ରଚି
ଗଡ଼ିଲେ ଅବନୀତଳେ ଦେନି ରଣେବେଳେ,
ହସ୍ତୀ ଅଶ୍ୱ, ରଥୁଁ ଖସି ପଡ଼ିଲେ ପ୍ରବୀରେ
ହତହୋଇ, ପୁଣ୍ୟକ୍ଷୟେ ପଡ଼ନ୍ତି ଭୂତଳେ
ତୀରବେଗେ ତାରକାରେ ଯଥା ପୁଣ୍ୟପ୍ରାଣୀ;
ଅକାଟ୍ଟ ଧାରଣଦମ୍ଭେ ଶତ ଶତ ଭଟ୍ଟେ (୧)
ଅଚ୍ଛେଦ୍ୟ ଅଭେଦ୍ୟ ଅସ୍ତ୍ରେ ନିଜ ଦେହ ମଣି
ରଣରୋଳେ ପଶି, ଶତ୍ରୁ ହସ୍ତେ ହାଣ ଖାଇ,
ବିଧିଲପି କାଟିବାକୁ ଅକ୍ଷମ ଅକାଟ୍ଟ
ଜାଣିଲେ ଏ ମହାଜ୍ଞାନ ପ୍ରାଣମୂଲ୍ୟ ଦେଇ,
ଗଣ୍ଡିରୁ ବିଚ୍ଛିନ୍ନ ହୋଇ ଛଟକେ ଛିଡ଼ନ୍ତି
ଛଟ ଛଟ ହେଲା ଭୂମେ ରକ୍ତ-ଉସ୍ରସ୍ରାବୀ (୨)
ସାଲଙ୍କାର ହସ୍ତପାଦ, ସଶିରସ୍କ ଶିରଃ; (୩)
ପେଷି ହୋଇଗଲେ ପତ୍ତି ଅଶ୍ୱେଅଶ୍ୱ ରଥେ (୪)
ରଥ, ଗଜେ ସେ ବିମର୍ଦ୍ଦେ ରୁଧିର-କର୍ଦ୍ଦମେ
ମସ୍ତିଷ୍କ, ଯକୃତ, ପ୍ଲୀହା, ଅନ୍ତ୍ର, ମାଂସ, ବସା,

---

(୧) ଅସ୍ତ୍ରରେ ଅଚ୍ଛେଦ୍ୟ ହେବେ ଏହି ବିଶ୍ୱାସରେ ପୂର୍ବେ ଯୋଦ୍ଧାମାନେ ଶରୀରରେ ଏକ ପ୍ରକାର ଜଡ଼ି ଧାରଣ କରୁଥିଲେ । ସେହି ଜଡ଼ିର ନାମ ଅକାଟ୍ଟ । ଭଟ୍ଟ—ଯୋଦ୍ଧା । (୨) ରକ୍ତଉସ୍ରସ୍ରାବୀ—ରୁଧିର ପ୍ରସ୍ରବଣସ୍ରାବୀ । (୩) ସଶିରସ୍କ—କଣ୍ଟକଯୁକ୍ତ । (୪) ପତ୍ତି—ପଦାତିକ ।

Digitized by PPRACHIN, SOA

ହୃଦସ୍ୱାଦ ମିଶି ହେଲ ଅଯତ୍ନେ ସେକାଳେ
ଭୈରବୀର ଭୋଗଯୋଗ୍ୟ ଖାଦ୍ୟଦ୍ରଧାଣ୍ଡିଆ, (୧)
ରଣବ୍ୟୋମେ ଶ୍ୟେନପକ୍ଷୀ ଉଡ଼ିଲେ କୌତୁକେ
ମାଂସଲୋଭେ, ରଣଲକ୍ଷ୍ମୀ-ପାରାବତରୂପୀ, (୨)
ରଥୀଙ୍କ ଅଚେତ ଦେଖି ଦେଲ ବାହୁଡ଼ାଇ
ରଥ ରଥଯନ୍ତା କାହିଁ ବିଜୁଳିର ବେଗେ, (୩)
ଛିନ୍ନ କଣ ଘାତେ ତ୍ରାସେ ଭଡ଼ି ବାହାବଳୀ, (୪)
କାହିଁ ଫେନୋଦ୍‌ଗାର ମୁଖେ, ରକ୍ତାକ୍ତ ବିଗ୍ରହେ
ଅନଳ ଉଗାରି ଘୋଣାନିଃସୃତ-ଫୁତ୍କାରେ
ବ୍ୟଗ୍ରେ ପଳାଇଲେ ଅଶ୍ୱ, ନିହତ ସାଦୀଙ୍କ
ପୃଷ୍ଠେ ବନ୍ଧି, ଶିରସ୍ତ୍ରାଣ ଲୋଟାଇ ଭୂତଳେ
ସେ ସାଦୀର, ଶୋଣିତାର୍ଦ୍ର କୁନ୍ତଳ ସହିତେ,
ପଳାଇଲେ ରଣସ୍ଥଳୁଁ ବିକଟ ଚିତ୍କାରେ
ସୌଦାମିନୀପ୍ରଭ-ହେମ-ପ୍ରବେଣୀମଣ୍ଡିତ (୫)
କରିବୃନ୍ଦ, ମନ୍ଦ୍ରଘୋଷି ଘନଘଟାକୃତି,
ତ୍ରାସେ ଥୋରପାର ଟେକି, ଫିଙ୍ଗି ଆରୋହୀଙ୍କ
ସ୍ୱଦଳ ବିପକ୍ଷଦଳ ଦଳି ନିର୍ବିଶେଷେ,
ଅସଂଖ୍ୟ ଯବନଯୋଧେ ହେଲେ ରଣଶାୟୀ,
କେତେ ଆର୍ଯ୍ୟ ସୈନ୍ୟପକ୍ଷେ ଗଲେ ପ୍ରେତପୁରେ

---

(୧) ଭୈରବୀ—ପ୍ରେତମାନଙ୍କର ଅଧିଷ୍ଠାତ୍ରୀ ଦେବତା । (୨) ପାରା ଲକ୍ଷ୍ମୀଙ୍କର ପ୍ରିୟପକ୍ଷୀ । ଶ୍ୟେନମାନେ ରଣଲକ୍ଷ୍ମୀଙ୍କର ପାରାସ୍ୱରୂପ ହେଲେ । (୩) ରଥଯନ୍ତା—ସାରଥି । (୪) ବାହାବଳୀ—ଘୋଟକମାନଙ୍କୁ । (୫) ବିଜୁଳିପରି ଉଜ୍ଜ୍ୱଳ ସୁବର୍ଣ୍ଣାସ୍ତରଣ ଆବୃତ । ହସ୍ତୀମାନଙ୍କ ସହିତ ମେଘର ଏବଂ ପ୍ରବେଣୀ ସହିତ ସୌଦାମିନୀର ଉପମା ।

Digitized by PPRACHIN, SOA

କେ କଳିବ ? କେ ଗଣିବ ବରଷାର ଧାର ?
ଅମୂଲ୍ୟ ଯେ ରକ୍ତ, ଆହା, ଦେଶରକ୍ଷା ଲାଗି
ବ୍ୟୟିଲେ ସ୍ୱବଳ ତାହା ଭ୍ରାତୃଘାତ ରଣେ; (୧)
ଦେବାକୃଷ୍ଣ ଦେବାମୀକ ହୃଂସପୁରପତି (୨)
ଶୁଆଇଲେ ଉଦ୍ଭସ୍ୱିନୀପତଙ୍କି ସ୍ୱହସ୍ତେ
ଅସ୍ୱପ୍ନକ୍ଷୁଭିତ ତଳ୍ପେ ପରଶୁ ଆଘାତେ, (୩)
ଅଞ୍ଜନ ଅଞ୍ଜନପ୍ରଭ ପଞ୍ଚାଳଭୂପତି (୪)
ଜୟଚନ୍ଦ୍ର ପ୍ରିୟସଖା ହେଲେ ଧର୍ମଶାୟୀ
ଚେଦିନାଥ ଶ୍ୱେତାସ୍ୟ ବରଛି ଭେଦନେ, (୫)
ଶସ୍ତ୍ର ଭୂଷି ଶ୍ୱେତାସ୍ୟ ଶତ୍ରୁନାଶି ତଳେ
ଓଟାର ନେଲେ ତା ମୁଣ୍ଡ ଶତ୍ରୁ ପ୍ରାଣ ସହ;
ବିକ୍ରମ କାଶ୍ମୀରପତି ପଡ଼ିଲେ ବିକ୍ରମେ (୬)
ରଣଚଣ୍ଡ ବଙ୍ଗପତି ରଣଚଣ୍ଡ ଭୁଲେ, (୭)
ରଣଚଣ୍ଡ-ଭଲ୍ଲ ତାଙ୍କ କଣ୍ଠମୂଳେ ପଶି
ଶୋଣିତ ଝଳକା ସହ ଅଛିଣ୍ଡ ବାହାର,
ତୁରଙ୍ଗୁ ବିକ୍ରମ ଖସି ଆସିଲେ ଅନ୍ତିମେ

---

(୧) ଆର୍ଯ୍ୟମାନଙ୍କର ଉଚିତ ଥିଲା ଯେ ସେମାନେ ଏକତା ବନ୍ଧନରେ ବଦ୍ଧ ହୋଇ ଜନ୍ମଭୂମିର ସ୍ୱାଧୀନତା ରକ୍ଷା ସକାଶେ ସେମାନଙ୍କର ବହୁମୂଲ୍ୟ ଶୋଣିତ ପ୍ରଦାନ କରିଥାନ୍ତେ । ସେମାନେ ତାହା ନକରି ଆପଣା ମଧ୍ୟରେ ହଣାହଣି ହୋଇ ସେହି ଶୋଣିତ ବୃଥା ବ୍ୟୟ କଲେ । (୨) ଦେବାମୀକ— ମୂଲତାନର ଅଧୀଶ୍ୱର, ଯବନପକ୍ଷୀୟ । (୩) ଅସ୍ୱପ୍ନକ୍ଷୁଭିତତଳ୍ପ—ଯେଉଁ ଶଯ୍ୟାରେ ନିଦ୍ରା ସ୍ୱପ୍ନଦ୍ୱାରା କ୍ଷୁଭିତ ହୁଏନାହିଁ । ମହାନିଦ୍ରାର ଶଯ୍ୟା । (୪) ଅଞ୍ଜନ ପଞ୍ଚାଳର ରାଜା, ଯବନପକ୍ଷୀୟ, ଅଞ୍ଜନପ୍ରଭ—କୃଷ୍ଣବର୍ଣ୍ଣ । (୫) ଶ୍ୱେତାସ୍ୟ—ଚେଦିରାଜ, ଆର୍ଯ୍ୟପକ୍ଷୀୟ । (୬) ବିକ୍ରମ କାଶ୍ମୀରରାଜ— ଯବନ ପକ୍ଷୀୟ । (୭) ରଣଚଣ୍ଡ—ବଙ୍ଗଦେଶର ରାଜା, ପୃଥ୍ୱୀ ପକ୍ଷୀୟ ।

Digitized by PPRACHIN, SOA

ଭୂମିଶଯ୍ୟା, ଚନ୍ଦ୍ରାନନା କାଶ୍ମୀର-ତରୁଣୀ (୧)
ପରିବର୍ତ୍ତେ ଶ୍ୟାମା ଲଭି ଶଯ୍ୟାସଖୀ ରୂପେ,
ରଣଚଣ୍ଡି-ଜୟହର୍ଷ ହେଲା ଷଣ୍ଡୋଷ୍ମୀ,
ବନ୍ଧୂକବପୁଷ୍ପ-ପୃଥୁ ରକ୍ତବନ୍ଧୁ-ସ୍ରାବୀ (୨)
ବହମର ମୁଣ୍ଡ ଊର୍ଦ୍ଧ୍ୱେ ତୋଳି ଭଲ୍ଲମୁନେ
ହଦମ୍ଭେ ଦେଖନ୍ତେ, ତାଙ୍କ ମୁଣ୍ଡ ହେଉକ୍ଷଣି
ଭଲ୍ଲଲଗ୍ନ ମୁଣ୍ଡ ସଙ୍ଗେ ଗଡ଼ିଲା ଭୂତଳେ
ବହମ ସୋଦର-କ୍ଷେମଧନ୍ୱାଖଡ୍ଗାଘାତେ, (୩)
ଅଙ୍ଗନାଥ ଯୁଧାଜିତ ଆକ୍ରମିଲେ ବେଗେ (୪)
ମଦନ-ସୁନ୍ଦର ଯୁବା ପ୍ରସେନ ପ୍ରବୀରେ, (୫)
ଜୟଚନ୍ଦ୍ର-ପୁତ୍ରଦ୍ୱୟ, ରଥୀ, ରଥବାହୀ
ଏକା ରଥେ, ଏକମୂର୍ତ୍ତି ଭିନ୍ନ ମାତ୍ର ଦେହେ
ଯୁଧାଜିତ କ୍ରୁର କୁନ୍ତ ସ୍ୱରୂପ ନର୍ମମ, (୬)
ସ୍ୱରୂପ ପ୍ରସେନ ବକ୍ଷେ ସ୍ତନୋଦରେ ପଶି
ଫୁଟିଲା ରକ୍ତାକ୍ତମୁନେ ପୃଷ୍ଠେ ଗ୍ରୀବାତଳେ,
ବଲ୍‌ଗାଧାରୀ ପ୍ରବୀରକୁ ଆବରି ସେକ୍ଷଣି (୭)
ଲୋଟାଇଲେ ଯୁଧାଜିତ ଭୂମେ ଅସିଘାତେ

---

(୧) କାଶ୍ମୀରଦେଶୀୟ ନାରୀମାନେ ସୌନ୍ଦର୍ଯ୍ୟ ନିମନ୍ତେ ପ୍ରସିଦ୍ଧ । (୨) ବନ୍ଧୂକବପୁଷ୍ପ ପରି ସ୍ଥୂଳ ରକ୍ତବିନ୍ଦୁ ଯେଉଁ ମୁଣ୍ଡରୁ ସ୍ରବୁଥିଲା । (୩) କ୍ଷେମଧନ୍ୱା—କାଶ୍ମୀର ପତିଙ୍କ-ଭ୍ରାତା, ଯବନ ପକ୍ଷଭୁକ୍ତ । (୪) ଯୁଧାଜିତ—ଅଙ୍ଗରାଜ, ଆର୍ଯ୍ୟପକ୍ଷୀୟ । (୫) ପ୍ରସେନ ଏବଂ ପ୍ରବୀର ଜୟଚନ୍ଦ୍ରଙ୍କ ପୁତ୍ର, ଏକ ରଥରେ ଜଣେ ରଥୀ ଏବଂ ଜଣେ ସାରଥୀ ହୋଇ ଯୁଦ୍ଧ କରୁଥିଲେ । (୬) ସ୍ୱରୂପ ନର୍ମମ—ସୌନ୍ଦର୍ଯ୍ୟ ପ୍ରତି ଯାହାର ଲେଶମାତ୍ର ମାୟାମମତା ନାହିଁ, କୁନ୍ତର ବିଶେଷଣ । (୭) ବଲ୍‌ଗାଧାରୀ—ସାରଥୀ ।

Digitized by PPRACHIN, SOA

କାଷ୍ଠାଙ୍କବ ଯେସ୍ନେ ବନେ ପୁଞ୍ଜିତ କଂଶୁକେ (୧)
ଶୈଳଖୋଲେ ଭ୍ରମୁ ଭ୍ରମୁ ମୃଗସ୍ଥା ଆଶ୍ରୟେ
ହରିଣଶିଶୁକୁ ପଥେ ହର୍ଯ୍ୟକ୍ଷ ଯେପରି
ହବୋଡ଼ି କାମୋଡ଼ି ଦନ୍ତେ କ୍ଷୀଣ ପ୍ରାଣ ତାର
ଦିଏ ଛାଡ଼ି, ଅକ୍ଷମ ସେ ଶିଶୁର ରକ୍ଷଣେ
କାନ୍ଦେ ମୃଗୀ ହେନ୍ତୁ ଦୃଶ୍ୟ ଗୁଳ୍ମତଳେ ଲୁଚି
ଦେଖୁଥାଇ ଥର ଥର ସ୍ୱିନ୍ନ-କଳେବରେ, (୨)
ପୁତ୍ରଙ୍କର ଏହି ଦଶା ଅଦୂରୁଁ ନିରେଖି
ରହିଲେ ତେସନେ ଉଭ୍ୱ କାନ୍ୟକୁବ୍ଜପତି
ମନ୍ତ୍ରୀଭୂତେ, ଶସ୍ତ୍ରହସ୍ତେ, ଲୋତକନୟନେ,
ପୁଷ୍କଳାବତୀର ପତି ଶମ୍ଭୁ-ଶିରୋପରେ (୩)
ପ୍ରହାରିଲେ ମହାଗଦା ମହାଗଦାଧାରୀ
କନ୍ଧାଳମାଳବ-ବ୍ରଜ, ଝାମରଣଘାତେ (୪)
ଚୂର୍ଣ୍ଣ ହୋଇ ଶମ୍ଭୁକଳ୍ପ ଶମ୍ଭୁ-ଶିରସ୍ତ୍ରାଣ (୫)
ଫାଟିଗଲା ଭାଲ-ଅସ୍ଥି, ପଡ଼ିଲା ବାହାର
ନୟନ କୋଟରୁ ବେନି ନୟନର ଡୋଳା,
ନ ପାରିଲେ ସମ୍ଭାଳି ସେ ଶିରସ୍ତ୍ର ସ୍ୱଶିର ବଞ୍ଚାଇ
ଶାଲାତୁର-ପତି ଶଙ୍ଖ, ଅମୋଘ-ନିପାତୀ (୬)
ଉତ୍ତ୍ରପତି ଯଯାତିର ଧୂପଖଣ୍ଡ-ଶ୍ରେଷ୍ଠ ; (୭)
ଦ୍ୱିଧାହୋଇ ମୁଣ୍ଡ, ଭଗ୍ନ ଦଧିଭଣ୍ଡ ଯଥା
ପଡ଼ିଲା ମସ୍ତିଷ୍କ-ତଳେ ଥପ ଥପ ହୋଇ,

---

(୧) କାଷ୍ଠ କାଟିବା ଯାହାର ଜୀବିକା । (୨) ସ୍ୱିନ୍ନ—ସ୍ୱେଦଯୁକ୍ତ, ଘର୍ମାକ୍ତ । (୩) ଶମ୍ଭୁ—ପୁଷ୍କଳାବତୀର ଅଧୀଶ୍ୱର, ଯବନପକ୍ଷୀୟ । (୪) କନ୍ଧାଳ—ମାଳବପତି ଆର୍ଯ୍ୟପକ୍ଷୀୟ । (୫) ଶମ୍ଭୁକଳ୍ପ—ବଜ୍ରପରି କଠିନ । (୬) ଶଙ୍ଖ—ଲାହୋରରାଜ: ଯବନପକ୍ଷୀୟ । (୭) ଯଯାତି—ଉତ୍କଳରାଜ, ଆର୍ଯ୍ୟପକ୍ଷୀୟ ।

Digitized by PPRACHIN, SOA

ବଙ୍ଗେଶ୍ୱର ଶାଳାଦିତ୍ୟ ଫିଙ୍ଗିଲେ ସାବେଳ (୧)
ତକ୍ଷଶିଳାପତିବକ୍ଷ ଲକ୍ଷି ମହାବଳେ,
ତକ୍ଷଶିଳା ଢାଲଗୁଡ଼ା ଭେଦିଲଣି ହୋଇ (୨)
ଦୋହଲିଲା ସେ ସାବେଳ, ଅକ୍ଷତେ ସେ ତହୁଁ
ଶାଳାଦିତ୍ୟ ପରେ ପଡ଼ି ବିଜୁଳିର ବେଗେ
ଭୂଷିଦେଲେ ତାଙ୍କ ଗଳେ ସୁତୀକ୍ଷ୍ଣ କଟାରି,
ଖଣ୍ଡି ତାଙ୍କ ରଣକଣ୍ଡୂ ଚିରଦିନ ଲାଗି, (୩)
ମାତ୍ର ପ୍ରତିଶୋଧ ତାର ଲଭିଲେ ଦେଖଣି
ପୌଣ୍ଡ୍ରପତି ମହେନ୍ଦ୍ରର ବରଛିର ମୁନେ (୪)
ସେ ବରଛି ତକ୍ଷଶିଳା ପିଚୁଳିପ୍ରଦେଶେ
ପଶି ଲୋଟାଇଲା ତାଙ୍କୁ ଉତ୍ସାନେ ଭୂତଳେ,
ଭକ ଭକ ରକ୍ତସ୍ରାବ ବୁଜିଲେ ସେ ଆଖି,
କୌଣେୟ ପ୍ରବର-ବଜ୍ରଘୋଷ ଭିନ୍ଦିପାଳେ (୫)
କନଖଳ ପତିଙ୍କର ସ୍କନ୍ଧସନ୍ଧି ଛିଡ଼ି (୬)
ଗଲା ହେଲା ଦେହ ସେହୁ ପଡ଼ିଲେ ଝନ୍‌ଝନେ,
ବେକପଣ୍ଡା ସଙ୍ଗେ ଗଲା ତବଲ୍ଲାଳା ଖଙ୍ଗି,
ଅମ୍ବାଲାୟୁପତି-ଶିରୁ ଶିରସ୍ତ୍ର ସୁନ୍ଦର, (୭)
କଣ୍ଠରୁ ସେ ଶିର ପୁଣି ଲୋଟାଇଲେ ଭୂମେ
ଅମର୍ଷି ଅନୁଜ ଜିଷ୍ଣୁ ବେନି ଅସିଘାତେ, (୮)

---

(୧) ଶାଳାଦିତ୍ୟ—ବଙ୍ଗଦେଶର ରାଜା, ଆର୍ଯ୍ୟପକ୍ଷୀୟ । (୨) ତକ୍ଷଶିଳାପତି—ଯବନ ପକ୍ଷୀୟ । (୩) ରଣକଣ୍ଡୂ—ଯୁଦ୍ଧାଭିଳାଷୀ । (୪) ମହେନ୍ଦ୍ର—ପୌଣ୍ଡ୍ରରାଜ, ଆର୍ଯ୍ୟପକ୍ଷୀୟ । (୫) ବଜ୍ରଘୋଷ ଆର୍ଯ୍ୟପକ୍ଷୀୟ ରାଜା । (୬) କନଖଳ—ହରିଦ୍ୱାରର ଅଦୂରବର୍ତ୍ତୀ । କନଖଳପତି—ଯବନ ପକ୍ଷୀୟ । (୭) ଅମ୍ବାଲାୟୁ—ଆଧୁନିକ ଅମ୍ବାଲା । ଅମ୍ବାଲାୟୁପତି—ଯବନପକ୍ଷୀୟ । (୮) ଜିଷ୍ଣୁ—ଅମର୍ଷିଙ୍କ କନିଷ୍ଠ ସହୋଦର, ଆର୍ଯ୍ୟପକ୍ଷୀୟ ।

Digitized by PPRACHIN, SOA

ବାଳେନ୍ଦୁ-ଲାଞ୍ଛିତ ଧ୍ୱଜ ପରେ ଲକ୍ଷ୍ୟ ରଖି
ଯୁଝିଲେ ସ୍ୱଦଳେ ପୃଥୁ, ଅରାତିପ୍ରମାଥୀ
ଆର୍ଯ୍ୟତନ୍ତ୍ର-କର୍ଣ୍ଣ ଧାର ସମର ସାଗରେ;
ନର୍ତ୍ତିତକିରୀଟ ଦେବ-କାର୍ତ୍ତିକପ୍ରତିମ, (୧)
ଅନିବର୍ତ୍ତୀ ରଣେ, ସୈନ୍ୟ ସଦା ଅଗ୍ରଯାୟୀ,
ପରପୁରଞ୍ଜୟୀ ଶୂର ଅମର୍ଷୀର ଅସି
ବୁଲିଲ କୁନ୍ତଳଚୟ ପ୍ରାୟେ ସେ ସଂଗ୍ରାମେ
ସହସ୍ର ସହସ୍ର ଶତ୍ରୁ ଲୋଟାଇ ଭୂତଳେ,
ସକିରୀଟ କାହାଶିରଃ ସଶସ୍ତ୍ର କା ବାହୁ,
ସକଙ୍କଟ କାହାଉରଃ, ସମେଖଳ କଟି (୨)
କାଟିଲେ କଦଳୀକାଣ୍ଡ ପ୍ରାୟେ କରବାଳେ
ଅଶ୍ୱବାର ମହାବୀର, ଛେଦିଲେ କାହାର
ଉପବୀତଛନ୍ଦେ ଦେହ; ସ୍କନ୍ଧ କଟିଯାଏ, (୩)
ଶ୍ମଶ୍ରୁଳ ଯବନମୁଣ୍ଡ ଶତ ଶତ ଭୂମେ
ଗଡ଼ାଇ ପୂଜିଲେ କି ସେ ରଣଚଣ୍ଡୀ-ପଦ
ସରଘାମଣ୍ଡିତ ରକ୍ତକମଳକୁସୁମେ ? (୪)
ଉର୍ମିପରେ ଉର୍ମି ଯଥା ଅମ୍ଭୋନିଧିକୂଳେ,
ଦଳେ ଦଳେ କଲେ ଆସି ସଦମ୍ଭେ ଚଢ଼ାଉ
ବୀରପରେ ଯବନର ବ୍ୟୂହିତ ବାହିନୀ,
ବୃଥା ଶ୍ରମ ! ଗିରି କେବେ ଟଳଇ କି ଶାରେ ?

---

(୧) ଦୋଦୁଲ୍ୟମାନକିରୀଟ—କାର୍ତ୍ତିକେୟଙ୍କ ପର । ଅମର୍ଷୀର ବିଶେଷଣ । (୨) ସକଙ୍କଟ—କବଚଯୁକ୍ତ । (୩) ଦେହରେ ପଇତା ଯେଉଁ ଭାବରେ ପଡ଼ିଥାଏ । (୪) ସରଘା ମଣ୍ଡିତ ଶିଶୁ ଭ୍ରମରଯୁକ୍ତ । ଯବନମାନଙ୍କ ମସ୍ତକ ସହିତ କମଳର ଏବଂ ଶ୍ମଶ୍ରୁ ସହିତ ଭ୍ରମରର ଉପମା ।

Digitized by PPRACHIN, SOA

ତରୁ ଉନ୍ମୂଳନ ଝଞ୍ଜାବାତ୍ୟାର ଆଘାତେ ?
ବର୍ତ୍ତି ନ ପାରିଲେ କେହି ଅମର୍ଷି ସମ୍ମୁଖେ
ସେ ଭୀମ ରୁଧିରବର୍ଷି ରୋମହର୍ଷି-ହାଣେ, (୧)
ଶୋଭିଲେ ସେ ଅରିଦଳେ; ଗିରିବ୍ରଜେ ଯଥା
ବଜ୍ର, ତମଃଗୁଚ୍ଛେ ତେଜଃ, ଔର୍ବ ସିନ୍ଧୁଜଳେ, (୨)
ଦାବାନଳ ତରୁତଳେ, ବଇଶ୍ୱ କପୋତେ,
ବାସନା-ପ୍ରପଞ୍ଚେ କିବା ବିବେକ ଯେସନେ; (୩)
କୃପାଣ-ମନ୍ଥନଦଣ୍ଡେ ଯବନ-ବାରିଧି
ମନ୍ଥି ଯଶଃ-କଉସ୍ତୁଭ ଅର୍ଜିଲେ ସୁରଥୀ, (୪)
ତେଜଃପୁଞ୍ଜ ଅଜାମିଲେ ଶୂଳର ପ୍ରାଚୀରେ
ରଖିଲେ ଶିବିରକୁ ବେଢ଼ି ବଜ୍ରଦୁର୍ଗ ପ୍ରାୟେ,
ଉଦ୍ବେଳ ଶଲାକା ଯେହ୍ନେ କୁଞ୍ଚିତ ଶଲ୍ଲକୀ, (୫)
ଯଥା ମହାନଦୀ-ବନ୍ୟା ମହାବେଗେ ଆସି
ମହାଶମ୍ଭୁ ସିଂହନାଥ-ଅଧିଷ୍ଠାନେ ପୂତ (୬)
ଦ୍ୱୀପ ଶୈଳମୂଳ ଭେଟି ପ୍ରତିଘାତ ବଳେ

---

(୧) ରୋମହର୍ଷିହାଣ—ଲୋମହର୍ଷଣକାରୀ ପ୍ରହାର । (୨) ଔର୍ବ—ବାଡ଼ବାନଳ । (୩) ବିବେକ ଅର୍ଥାତ୍ ଜ୍ଞାନୋଦୟ ହେଲେ ବାସନାସମୂହ ନଷ୍ଟ ହୁଏ । (୪) କୌସ୍ତୁଭ ସମୁଦ୍ରମନ୍ଥନରୁ ଉଦ୍‌ଗତ ହୋଇଥିଲା । (୫) ଶଲ୍ଲକୀ—ଝିଙ୍କ, କୁଞ୍ଚିତ ହେଲେ ତାହାର ଶଲାକାମାନ ଉଦ୍ଦଣ୍ଡ ହୁଏ । (୬) ସିଂହନାଥ—ବାଙ୍କି ଅନ୍ତର୍ଗତ ବୈଦେଶ୍ୱର ସମ୍ମୁଖବର୍ତ୍ତୀ ଦ୍ୱୀପଶୈଳ । ଏହି ଶୈଳର ପାଦଦେଶରେ ସିଂହନାଥଙ୍କ ଦେଉଳ ପ୍ରତିଷ୍ଠିତ । ମହାନଦୀର ବନ୍ୟା ପଶ୍ଚିମରୁ ଆସି ଏହି ଶୈଳର ପ୍ରତିଘାତରେ କିଛି ଦୂର ଉଜାଣି ପ୍ରବାହିତ ହୁଏ । ସେଠାରୁ ପୁଣି ଦ୍ୱିଧା ବିଭକ୍ତ ହୋଇ ଦୁଇ ପ୍ରବାହ ସିଂହନାଥ ଶୈଳର ଉଭୟ ପାର୍ଶ୍ୱ ଦେଇ ପୂର୍ବମୁଖରେ ପ୍ରବାହିତ ହୁଏ । ଏହି ପର୍ବତର ପ୍ରତିଘାତ ଯୋଗୁଁ ମହାନଦୀ ଏହିଠାରେ ଦ୍ୱି-ସ୍ରୋତା ।

Digitized by PPRACHIN, SOA

ପଛକୁ ନେଉଛି, ପୁଣି ହେନଧାର ହୋଇ
ଗିର ହେନପାଖେ ବଢ଼ଯାଏ ପୂର୍ବମୁଖେ,
ସମରେ ଦୁର୍ଦ୍ଧର୍ଷ ବୀର ଅମର୍ଷୀ ଅଗ୍ରତେ
ପ୍ରତାପେ ତେସନ ତାଙ୍କ ଅସ୍ତ୍ରବ୍ୟସ୍ତ ହୋଇ
ଦ୍ୱିଧା ବିଦାରିତ ହେଲ ଯବନବାହିନୀ
ପୁନଃ ପୁନଃ ଦଳେ ଦଳେ ପଡ଼ି ରଣୋନ୍ମାଦେ
ଅସି-ଆସ୍ଫାଳନ-ବେଗେ ତାଙ୍କର ମୂରତି
ଦିଶିଲ ପ୍ରବିଷ୍ଟ କି ସେ ବିଦ୍ୟୁତ-ପଞ୍ଜରେ, (୧)
ଜ୍ୱାଳାବଳି-ଜିହ୍ୱା ଗ୍ରାସି ଗ୍ରାସିଲେ ଖରବେଗେ (୨)
ଦାବାନଳ ନିରର୍ଗଳ ଯେସନେ ମହାବନେ (୩)
ଗ୍ରାସିଲେ ପ୍ରଚଣ୍ଡେ ସେହ୍ନେ ବୈରିଦଳ ଯୋଦ୍ଧା,
ସହସା ସ୍ୱଦଳୁଁ ବୀର ବିଚ୍ଛିନ୍ନ ହୋଇଣ
ପଶିଲେ ଯବନବ୍ୟୂହେ, ଶତ୍ରୁ ଖଡ୍ଗାଘାତେ
ଗଲେ ବିଦ୍ଧ ହୋଇ ତାଙ୍କ ତୁରଙ୍ଗ ଏକାକେ
ପଡ଼ିଲ ନିହତ ହୋଇ ରୁଧିର କର୍ଦ୍ଦମେ;
ଅଶ୍ୱୁଁ ଡେଇଁପଡ଼ି ବୀର ପଦାତିକରୂପେ
ଯୁଝିଲେ ଅଦ୍ଭୁତ ଢଙ୍ଗେ ଅତୁଟ ସାହସେ,
ଲଘୁହସ୍ତଯୋଗୁଁ ଶୋହି ସେ ମହାସଙ୍କଟେ (୪)
ସର୍ବାଙ୍ଗେ ଆବୃତ ଯେସନେ ନିଜ କରବାଳେ,
ଝଡ଼ିଲ ଯବନମୁଣ୍ଡ ସେ କୃପାଣ-ସ୍ପର୍ଶେ
ଶତ ଶତ ପକ୍ୱଫଳ ଶୀତାନ୍ତେ ଯେସନେ,
କୃଷିବଳ-ଦାନ୍ଦେ ଅବା ପକ୍ୱଶସ୍ୟାବଳୀ (୫)

(୧) ଅତି ବେଗରେ ଅସି ଅସ୍ଫାଳନ ଯୋଗୁଁ ଅମର୍ଷୀ ବିଦ୍ୟୁତପୁଞ୍ଜର ମଧ୍ୟଗତ ପରି ବୋଧ ହେଉଥିଲେ । (୨) ଜ୍ୱାଳାବଳି ଜିହ୍ୱା— ଜ୍ୱାଳାମାଳାରୂପ ରସନା । (୩) ନିରର୍ଗଳ— ଅପ୍ରତିହତଗତି । (୪) ଲଘୁହସ୍ତ— ବେଗଗାମୀ ହସ୍ତ । (୫) କୃଷିବଳ ଦାନ୍ଦେ —କୃଷକଙ୍କ ଦାଆରେ ।

Digitized by PPRACHIN, SOA

କୃଷିକ୍ଷେତ୍ରେ, କୃଷିବଳପ୍ରିୟ-ଧନୁମାସେ (୧)
ଶତପ୍ରସରଣେ ଏବେ ବେଢ଼ିଲେ ଅଗାଧ
ଅମର୍ଷୀଙ୍କି, ଆର୍ଜ୍ଜୁନିକ ଯଥା କୁରୁଚମୂ (୨)
କିମ୍ବା ଦାବାନଳ ଚକ୍ର ଯଥା କେଶରୀକି,
ମାତ୍ର ଭରସିଲେ ନାହିଁ ପାଖେ ପଶିବାକୁ
ମୂର୍ତ୍ତିମନ୍ତ କାଳପ୍ରାୟେ ତ୍ରାସେ ତାଙ୍କୁ ମଣି,
ମୂର୍ତ୍ତିମନ୍ତ କାଳପ୍ରାୟେ ଶାର୍ଦ୍ଦୂଳ ବଂଶର (୩)
ବାମଣ୍ଡାକୁମାର ବୁଧ-ଚକୋର ଚନ୍ଦ୍ରମା
ହେ ସଚ୍ଚିଦାନନ୍ଦ ! ତୁମ୍ଭ ପାଶଧର ସ୍ଥଳୀ—
ଚୁଲିଆ ଅଚଳତଟୁ ଶାର୍ଦ୍ଦୂଳ ଯେସନେ (୪)
ଓହ୍ଲାନ୍ତେ ଶିକାରଲୋଭେ ବ୍ରାହ୍ମଣୀତୀରଭୂମେ,
ଡେଣ୍ଡା, ଏକମୂନା, ଟାଙ୍ଗି ଆଦ ଶସ୍ତ୍ର ଧରି
ବେଢ଼ନ୍ତି ଚୌଦିଗେ ତାକୁ ମହୁଡ଼ାଳେ ଯାଇ
ଦଳେ ଦଳେ ମହୋତ୍ସବେ, ମହା କୋଳାହଳେ
ଅକ୍ଷୁବ୍ଧ ସେ ଆକ୍ରମଣେ ନିର୍ଭୀକ ସ୍ୱଭାବେ,
ଉଭାହୋଇ ଏକଠାବେ ରହେ ମହାବଳୀ
ମହାବଳ, ଅରିଦଳ ତୃଣ କରି ଗଣି,
ଫୁଲାଇ ତା ବପୁ ରୋଷେ, ରକ୍ତାକ୍ଷ ବୁଲାଇ
ଗୃହୁଁ ଥାଏ କ୍ଷଣେ କ୍ଷଣେ ବିଦ୍ୟୁତ୍-ଗୃହାଣି
ମୁହୁର୍ମୁହୁଃ ଭୂମିତଳେ ଲାଙ୍ଗୁଡ଼ କଚାଡ଼ି

---

(୧) ଧନୁ ଅର୍ଥାତ ପୌଷମାସରେ ଧାନ କଟା ଯୋଗୁଁ କୃଷକମାନଙ୍କର ଗୃହ ଶସ୍ୟରେ ପୂର୍ଣ୍ଣ ଥାଏ । (୨) କୁରୁସେନା ଚକ୍ରବ୍ୟୂହ ଦ୍ୱାରା ଅଭିମନ୍ୟୁକୁ ଯେପରି ବେଢ଼ିଥିଲେ । (୩) ବାମଣ୍ଡା ଯୁବରାଜ ଶ୍ରୀ ସଚ୍ଚିଦାନନ୍ଦ ଦେବ ଯେମନ୍ତ ବିଦ୍ୟାରସିକ, ମୃଗୟାରେ ସେହିପରି ସିଦ୍ଧହସ୍ତ । (୪) ଚୁଲିଆ—ବାମଣ୍ଡା ରାଜ୍ୟର ଗୋଟିଏ ଉଚ୍ଚ ପର୍ବତ, ବ୍ରାହ୍ମଣୀନଦୀର ଅଦୂରବର୍ତ୍ତୀ ।

Digitized by PPRACHIN, SOA

( ୨ )

ପ୍ରକଟି ଦଶନପାଟି ମାରଇ ହାକୁଟି,
ମହାକ୍ଷତ୍ରିୟ ଯେ ତେଣୁ; ପଛକୁ ହଟିବା (୧)
ଅବା ପଳାଇବାକୁ କେବେ ନ ବଳାଏ ମଣ;
ତେସନେ ଅମର୍ଷୀ ସ୍ୱାର ପରପୁରଞ୍ଜୟୀ
ଊର୍ଜସ୍ୱଳ କିମ୍ବା ବଳ କି ଶିକ୍ଷାକୌଶଳେ,
ଶୋଭିଲେ ଅକ୍ଷୋଭେ, ସେହି ଅଶ୍ରପରିବେଶେ (୨)
ଆକ୍ରମଣେ ଅଗ୍ରସର ହୋଇ କେତେ ଶୂରେ
ଅଗ୍ରସର ହେଲେ ମାତ୍ର କୃତାନ୍ତ-ସଦନେ,
ପ୍ରଦୀପର ଶିଖାସ୍ପର୍ଶେ ପତଙ୍ଗ ଯେପରି,
ଏକକ ସେ ଦିଶୁଥିଲେ ଅଦ୍ଭୁତ ପରାକ୍ରମେ
ଶତ୍ରୁ ନେତ୍ରେ, ପ୍ରତିଜନେ ପ୍ରତିଯୋଧରୂପେ, (୩)
ମହାଶୂଳୀ ଅଜାମିଳେ ପ୍ରାଣପଣେ ଯୁଝି
ଶୂଳେ ଅରି ପରେ ଅରି ପ୍ରେରି ପ୍ରେତପୁରେ
ଭେଦି ନ ପାରିଲେ ସେହି ଯବନ-ପାଚେରି
ଅଭେଦ୍ୟ, ଅଭେଦ୍ୟ ଯଥା କୁରୁ-ଅନୀକିନୀ
ଚକ୍ରବ୍ୟୂହେ ଦଢ଼ୀଭୂତ ଦ୍ରୋଣର ଭିଆଣେ, (୪)
ଢାଲେ ଢାଲ, ଭଲ୍ଲେ ଭଲ୍ଲ କଣ୍ଟେ କଣ୍ଟେ ।
କଙ୍କଟ କଙ୍କଟେ ଜାକି ହୋଇ ସେ ପ୍ରାଚୀର
ଦିଶିଲା ଭାସ୍ୱର, ଯେହ୍ନେ ଶାରଦ-ପ୍ରଭାତେ
ପ୍ରାଚୀପଟେ ରଚେ ସ୍ୱର୍ଣ୍ଣ ବର୍ଣ୍ଣ ମେଘରାଜି

(୧) ଜାଙ୍ଗଲ ଦେଶରେ ଲୋକେ ବାଘକୁ ମହାକ୍ଷତ୍ରିୟ ବୋଲନ୍ତି । (୨) ଅଶ୍ରପରିବେଶେ—ଶତ୍ରୁଚକ୍ର ମଧ୍ୟରେ । (୩) ଅମର୍ଷୀ ଏକା ହୋଇ ସୁଦ୍ଧା ଦଶହସ୍ତ ପ୍ରାୟ ବୋଧ ହେଉଥିଲେ । ପ୍ରତ୍ୟେକ ଯୋଦ୍ଧା ତାହାଙ୍କୁ ଆପଣାର ପ୍ରତିଯୋଦ୍ଧା ମଣିଲା । (୪) ଦ୍ରୋଣାଚାର୍ଯ୍ୟଙ୍କର ଚକ୍ରବ୍ୟୂହ ରଚନା ପ୍ରସଙ୍ଗ ମହାଭାରତରେ ଅନୁସନ୍ଧେୟ ।

Digitized by PPRACHIN, SOA

ତମୋଜୟୀ ତପନର ଉପକାର୍ଯ୍ୟ ରୂପେ, (୧)
କିମ୍ବା ବହ୍ନି-ଆସ୍ତରଣ ଯେହ୍ନେ ବେଣାବନେ,
ଆଲୋକେ ଯା ଶୀତତ୍ରାସେ କନକା ଅଞ୍ଚଳେ
ମୃଗବହୁ କଚ୍ଛଭୂମି ଲବଣସୈନ୍ଧବୀ (୨)
ଦିଗ୍‌ବାରଣରୂପେ ସେବ ସିନ୍ଧୁବାସୀ ନାବେ, (୩)
ଅମର୍ଷୀଙ୍କି ଦେଖି ଘୋର ବିପଦ କବଳେ,
ପରନ୍ତପ ପୃଥୁ ଦେଲେ ଦୂରୁଁ ସ୍ୱପଟାଇ
ଅଶ୍ୱବର, ପୃଥୁ ସଙ୍ଗେ ଅସିଲେ ଦଉଡ଼ି
ଅଙ୍ଗଦେଶୀ ଯୋଦ୍ଧାଦଳ ବିକୂଳର ବେଗେ,
ଘର୍ଘରେ ଚଳାଇ ରଥ ଦାକ୍ଷୀପୁତ୍ର ରଥୀ
ଅସିଲେ ରଥାଙ୍ଗ ବେଗେ ରକ୍ତ ଛିଟିକାଇ (୪)
କବନ୍ଧ-ବନ୍ଧୁର ପଥେ ପୃଥୁଙ୍କ ସଙ୍କେତେ (୫)
ଆସିଲେ ସୈନ୍ଧବୀଚମୂ ମନୋରଥପନ୍ଥ,
ପିତ୍ତଳବର୍ମିତ ବସ୍ତ୍ରବେଣୀ-ଅଶ୍ୱଦ୍ୱାରେ
ତୀକ୍ଷ୍ଣଭଲ୍ଲଧାରୀ ଝରେ ମିଳଲେ ତକ୍ଷଣେ,
କାଶ୍ମୀରୀ ସନ୍ଧେତେ ଯୁଝୁଥିଲେ ଯେ ଅଦୂରେ

---

(୧) ତମୋଜୟୀ ସୂର୍ଯ୍ୟଦେବଙ୍କର ତମ୍ବୁସ୍ୱରୂପ ଯେଉଁ ସ୍ୱର୍ଣ୍ଣବର୍ଣ୍ଣ ମେଘମାଳା ଶରତ୍ ପ୍ରଭାତରେ ପୂର୍ବଦିଗରେ ଶୋଭାପାଏ, ଅଗ୍ନୋଜ୍ଜ୍ୱଳ ଯବନ ପ୍ରାଚୀର ସେହିପରି ଦିଶୁଥିଲା । (୨) କନକା ଅଞ୍ଚଳରେ ସମୁଦ୍ର ତଟରେ ବହୁ ଦୂରବ୍ୟାପୀ ବେଣାବନ ଦେଖାଯାଏ । ଏହି ବେଣାବନରେ ଅସଂଖ୍ୟ ହରିଣ ଦେଖାଯାନ୍ତି । ଶୀତ ଋତୁରେ ଏହି ବେଣା ବନରେ ଅଗ୍ନି ଲଗି ବହୁକୋଶବ୍ୟାପୀ ବ୍ୟାପୀ ପ୍ରାଚୀରବତ୍ ଦିଶେ । ଲବଣସୈନ୍ଧବୀ—ଲବଣ ସିନ୍ଧୁ ସମ୍ବନ୍ଧୀୟ କଚ୍ଛଭୂମିର ବିଶେଷଣ । (୩) ନାବିକମାନେ ସମୁଦ୍ରରେ ଏହି ଅଗ୍ନି ପ୍ରାଚୀର ଦେଖି ସମୟ ସମୟରେ ଦିଗ ନିରୂପଣ କରନ୍ତି । (୪) ରଥାଙ୍ଗେ—ରଥଚକ୍ରଦ୍ୱାରା । (୫) କବନ୍ଧ-ବନ୍ଧୁର ପଥେ—ଶବ ବନ୍ଧୁର ମାର୍ଗରେ ।

Digitized by PPRACHIN, SOA

ସୌରସେନୀ ଶୂର ବୃନ୍ଦ ଆସିଲେ ଦଉଡ଼ି,
ମତ୍ତ ମତଙ୍ଗଜେ ଚଢ଼ି ଆସିଲେ ନେପାଳୀ
ସମରତରଙ୍ଗ ଏବେ ଦ୍ୱିଗୁଣେ ଉଚ୍ଛୁଳି
ଭସାଇଲା ରଙ୍ଗେ ତହିଁ ଚତୁରଙ୍ଗ ସେନା,
ବ୍ୟାଧଜାଳେ ଶିଶୁ ଦେଖି ବାଘୁଣୀ ଯେସନେ
ମହାବେଗେ ଗର୍ଜି ଆର୍ଯ୍ୟେ ପ୍ରଚଣ୍ଡ ବିକ୍ରମେ
ନୀରନ୍ଧ୍ର ସେ ଶତ୍ରୁଦଳ ପକାଇଲେ ଘାଣ୍ଟି, (୧)
ଅଗ୍ରସର ହୋଇ ଯେତେ ଯବନ ସାହସେ
ଓଗାଳିଲେ ବାଟ, ପଡ଼ି କାମୋଡ଼ିଲେ ମାଟି
ମୁହୂର୍ତ୍ତେ ଯବନବ୍ୟୂହ ବୀରେନ୍ଦ୍ର-କେଶରୀ
ଭେଦି ଆର୍ଯ୍ୟ-ସେନାନଙ୍କ ଉଦ୍ଧାରିଲେ ତହୁଁ
କରବାଳେ ବାଟ କାଟି ପୃଥୁ ପୃଥୁ ଯଶାଃ
ସେ ରଣ ଶୋଣିତପଙ୍କ-ପିଚ୍ଛିଳ ପ୍ରାଙ୍ଗଣେ; (୨)
ସେ ସଙ୍କଟୁ ମୁକ୍ତ ହୋଇ ଶୋଭିଲେ ସେନାନୀ
ମେଘମୁକ୍ତ ଶଶୀ ଯଥା, ଶୀତାନ୍ତେ ଅଥବା
ନିର୍ମୋକ-ନିର୍ମୁକ୍ତ ଯଥା ଊର୍ଦ୍ଧ୍ୱ ଫଣ ଫଣୀ, (୩)
ବାୟୁକୁ ସାରଥି ପାଇ ବିଭାବସୁ ପ୍ରାୟେ (୪)
ବିପିନେ ଅମର୍ଷୀ ପୃଥୁ ଯୁଝି ଏକସ୍ଥାନେ
ଦୁର୍ବାର ବେଗଏ ହେଲେ ବଇରି ବିଭ୍ରାଟେ, (୫)
ବିକଟ ଯବନ-ଥାଟ ହଟିଲା ସନ୍ତ୍ରାସେ
ଉତ୍କେଶର ହରିଆଗେ କରୀପଲପ୍ରାୟେ, (୬)

---

(୧) ନୀରନ୍ଧ୍ର—ଅଘନବଡ଼ । (୨) ରକ୍ତପିଚ୍ଛିଳ—ରଣଭୂମି । (୩) ନିର୍ମୋକ—ନିର୍ମୁକ୍ତ—କାତି ଛାଡ଼ିଥିବା । (୪) ବିଭାବସୁ—ଅଗ୍ନି । (୫) ବୈରିବିଭ୍ରାଟେ—ଶତ୍ରୁମର୍ଦ୍ଦନରେ । (୬) ଉତ୍କେଶର ହରି—ସ୍ଫୀତ କେଶର ସିଂହ ।

Digitized by PPRACHIN, SOA

ଭଙ୍ଗଦେଲ ଠାବେ ଠାବେ ଯବନପୃତନା,
ପଛ ପଳାୟକବୃନ୍ଦେ ପଛୁ ହାଣି ହାଣି
ଦୁର୍ଦ୍ଦିନ ଭିଆଇ ତାଙ୍କ ରୁଧିର ଆସାରେ, (୧)
ତଡ଼ି ନେଇଗଲେ ବୈରିଦଳ ବେନ୍ନ ଥାରେ,
ମହାବାତ୍ୟା ଯଥା ଅମାସୌରିସ୍ୱାତିଯୋଗେ (୨)
ସିନ୍ଧୁହୃଦ ଦ୍ୱନ୍ଦ୍ୱ ଧାଏଁ ବିଶ୍ୱ ଧ୍ୱଂସିବାକୁ
ହିନ୍ତାଳକୁନ୍ତଳା ବେଳା ଲଙ୍ଘି ଘୋରବେଗେ,
ରଥ, ଅଶ୍ୱ, ଗଜ, ଝସିପଡ଼ି କେତେ ଯୋଧେ (୩)
ଚିତ ହୋଇ, ମୁହଁ ମାଡ଼ି, ଅଥବା ପାରୁଶେ
ଝଣ୍ଡ ଝଣ୍ଡ ପିଷ୍ଟ ହେଲେ ଅଶ୍ୱଖୁର ଘାତେ,
ରଥଚକ୍ରେ, ଗଜପଦେ, ପଦାତିମର୍ଦ୍ଦନେ; (୪)
ସହସା ଯବନ ସେନାପତିର ସଙ୍କେତେ
ନୀରବ ଏକାଳେ ହେଲ ସମର-ବାଜଣା,
ଶାନ୍ତିର ପତାକା ଦେଖି ନିବର୍ତ୍ତି ସମରୁଁ
ରହିଲେ ଯେ ଯହିଁ ତହିଁ ଶସ୍ତ୍ର କରେ ଧରି,
ଦିଶିଲ ଆଲେଖ୍ୟ-ପ୍ରାୟେ ରକ୍ତାକ୍ତ ସେ ସ୍ଥଳ; (୫)
ଦୂତବାନାଧାରୀ ସାଦୀ ଯବନ-ପ୍ରଣିଧି (୬)
ପୃଥ୍ୱୀଙ୍କ ସମ୍ମୁଖେ ଆସି ଜୁହାରି ବିନୟେ,

(୧) ଦୁର୍ଦ୍ଦିନ- ବର୍ଷାଦିନ । ରୁଧିର ଆସାରେ—ରକ୍ତ ବୃଷ୍ଟିରେ । (୨) ଅମାବାସ୍ୟା, ଶନିବାର, ସ୍ୱାତୀ ନକ୍ଷତ୍ର ଏ ତିନିଙ୍କର ଏକତ୍ର ଯୋଗ ମହାବାତ୍ୟା ସୂଚକ । (୩) ହିନ୍ତାଳ କୁନ୍ତଳା ବେଳା—ହେନ୍ତାଳବନାକୀର୍ଣ୍ଣ ସମୁଦ୍ରତୀର । (୪) ଅଶ୍ୱଖୁର ଏବଂ ରଥଚକ୍ର ଖଣ୍ଡ ଖଣ୍ଡ ହେଲେ ହସ୍ତିପାଦରେ ଏବଂ ପଦାତି-ମାନଙ୍କ ମର୍ଦ୍ଦନରେ ପିଷ୍ଟ ହେଲେ । (୫) ଆଲେଖ୍ୟ ଚିତ୍ର । (୬) ଦୂତପତାକା-ଧାରୀ ଅଶ୍ୱାରୋହୀ ଯବନବାର୍ତ୍ତାବହ ।

Digitized by PPRACHIN, SOA

ଦେଖାଦେଇ ଆକ୍ଷି ପେନ; ବାହୁଡ଼ିଲ ଝରେ, (୧)
ପଲକେ ଏ ମହାଦୃଶ୍ୟ ହେଲ ଅନ୍ତର୍ହିତ;
ଯୁଧିଷ୍ଠିର ନେଇଁ ସେହୁ ସହ୍ୟଗିରତଟେ
ଅଗ୍ନି-ଇଚ୍ଛାମତେ, ସ୍ୱପ୍ନଯଥା ଜାଗରଲେ (୨)

———

(୧) ଲେଶ—ପତ୍ର । (୨) ଜାଗ୍ରତ ହେଲେ ସ୍ୱପ୍ନ ଯେପରି ଅନ୍ତର୍ହିତ ହୁଏ ।

Digitized by PPRACHIN, SOA